# ମହୀୟସୀ ମା
# ରମାଦେବୀ

ଲେଖକ
ଶ୍ରୀ ନରେଶ ଚନ୍ଦ୍ର ବେହେରା



ସୁନାପିଲା ପ୍ରକାଶନ
ଝାଞ୍ଜିରୀ ମଙ୍ଗଳା କଟକ-୯

# ମହୀୟସୀ ମା' ରମାଦେବୀ


ଲେଖକ

**ଶ୍ରୀ ନରେଶ ଚନ୍ଦ୍ର ବେହେରା**

ଉତ୍ତରପଡା, ଅନୁଗୁଳ



ପ୍ରକାଶକ

**ଶ୍ରୀ ପ୍ରମୋଦ ରାୟ**

ସୂନାପିଲ୍ ପ୍ରକାଶନ

ଝାଞ୍ଜିରି ମଙ୍ଗଳା, କଟକ-୯

ମୁଦ୍ରଣ

**ଦିଗମ୍ବର ପ୍ରିଣ୍ଟିଂ ପ୍ରେସ**

ମଖଦାମପୁର, କଟକ-୯

ଅଙ୍ଗସଜ୍ଜା

**ଶ୍ରୀ ଧରଣୀଧର ବେହେରା**

ସାନ୍ତରାଗ୍ରା, ଛତିଆ

ପ୍ରକାଶକାଳ

**ଉତ୍କଳ ଦିବସ, ୧୯୯୫**

**ମୂଲ୍ୟ—ଟ ୫-୦୦**



# ଉତ୍କଳ ମାତାର ଯୋଗ୍ୟତମା କନ୍ୟା

"ସ୍ୱାଧୀନତା ମଣିଷର ଜନ୍ମଗତ ଅଧିକାର ।" ଏ ଉକ୍ତିକୁ ହୃଦୟଙ୍ଗମ କରି ଭାରତର ସ୍ୱାଧୀନତା ସଂଗ୍ରାମରେ ଉତ୍କଳର ଯେଉଁ କେତେକଣ ମହୀୟସୀ ନାରୀ ଝାସ ଦେଇ-ଥିଲେ, ସେମାନଙ୍କ ମଧ୍ୟରେ ମା' ରମାଦେବୀ ଅନ୍ୟତମା ।

ରମାଦେବୀ ସୁଖ ଐଶ୍ୱର୍ଯ୍ୟରେ ବୁଡ଼ି ରହିବାକୁ ଚାହିଁ ନ ଥିଲେ । ସେ ସମସ୍ତ ସୁଖକୁ ତ୍ୟାଗ କରି ବାପୁଜୀଙ୍କର ଡାକରାରେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ପାଟପଡନକୁ ଆଡ଼େଇ ଦେଇ ଖଦଡ଼ ପିନ୍ଧିଥିଲେ । ନିଜର ସମସ୍ତ ଅଳଙ୍କାର ସତ୍ୟାଗ୍ରହ ଆନ୍ଦୋଳନ ପାଇଁ ଦାନ କରିଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଅନେକଥର କାରାବରଣ କରିଥିଲେ । ମହୀୟସୀ

ମା' ରମାଦେବୀଙ୍କ ପ୍ରେରଣାରେ ଓଡ଼ିଶାର ଅନେକ ନାରୀ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ସମାଜ ସେବା କ୍ଷେତ୍ରରେ ରମାଦେବୀଙ୍କର ଉଲ୍ଲେଖନୀୟ ଅବଦାନ ଯୋଗୁଁ ତାଙ୍କୁ ସର୍ବଭାରତୀୟ ସ୍ତରରେ ସମ୍ମାନିତ କରାଯାଇ ପୁରସ୍କାର ଦିଆଯାଇଥିଲା । କିନ୍ତୁ ରମାଦେବୀ ପୁରସ୍କାର ଅର୍ଥକୁ ସମାଜର ଉନ୍ନତି ପାଇଁ ଦାନ କରି ଦେଇଥିଲେ ।

ତାଙ୍କର ଏହି ମହାନ ଅବଦାନ ପାଇଁ ସେ ସମସ୍ତ ପାଖରେ ସ୍ନେହମୟୀ ମା' ହୋଇ ରହିଗଲେ । ସେ ଉତ୍କଳ-ବାସୀଙ୍କର ଅତି ଆଦରର ମା' ରମାଦେବୀ ନାମରେ ପରିଚିତା ହୋଇ ରହିଲେ ।

ଉତ୍କଳ ମାତାର ଯୋଗ୍ୟତମା କନ୍ୟା ମହୀୟସୀ ମା' ରମାଦେବୀ ଯୁଗଯୁଗ ପାଇଁ ଅମର ହୋଇ ରହିଗଲେ ।

## ରମାଦେବୀଙ୍କ ଜନ୍ମ

ଉତ୍କଳ ଗୌରବ ମଧୁସୂଦନ ଦାସଙ୍କର ସାନଭାଇ ଗୋପାଳବଲ୍ଲଭ ଦାସ । ସେମାନେ ଥିଲେ ଏକ ଜମିଦାର ପରିବାରର । ଗୋପାଳବଲ୍ଲଭ ଥିଲେ ସେତେବେଳର ଓଡ଼ିଆ ଅଫିସର ।

ସେଦିନ ଥିଲା ୧୮୯୯ ମସିହା ଡିସେମ୍ବର ମାସ ୩ ତାରିଖ । ମାତା ବସନ୍ତ କୁମାରୀଙ୍କ ଗର୍ଭରୁ ଏକ ନବଜାତ ସନ୍ତାନ ଭୂମିଷ୍ଠ ହୋଇ କୁଆଁ କୁଆଁ କାନ୍ଦି ଉଠିଲା ।

ଜମିଦାର ପରିବାରର ସମସ୍ତେ ଦେଖିଲେ ଝିଅଟିଏ । ଧନସମ୍ପତ୍ତିର ଅଭାବ ନାହିଁ । ଦୁଃଖ କ'ଣ ସେ କେବେ ଜାଣି

ନାହାନ୍ତି । ତେଣୁ ଦ୍ୱିତୀୟ କନ୍ୟାଟିକୁ ପାଇ ଦୁଃଖ ନ କରି ସମସ୍ତେ ଖୁସି । ଲକ୍ଷ୍ମୀ ବିଜେ କରିଥିବାରୁ ସମସ୍ତଙ୍କ ମନରେ ଆନନ୍ଦ । ପିତା ଗୋପାଳବଲ୍ଲଭ ଏବଂ ବଡ଼ବାପା ମଧୁସୂଦନ ବିଶେଷ ଆନନ୍ଦିତ ହୋଇଥିଲେ ।

ବଡ଼ ଭଉଣୀ ଉମା ସରଳା ଦେବୀଙ୍କ ସହ ନବଜାତ କନ୍ୟାଟି ଆନନ୍ଦରେ ବଢ଼ିବାକୁ ଲାଗିଲା । ସେ ଝିଅଟିର ନାଁ ଦେଲେ ରମା । ଉମା ଆଉ ରମା ଶଶିକଳା ପରି ବଢ଼ିବାକୁ ଲାଗିଲେ । ଉମା ଓ ରମା ଥିଲେ ପିତା ଗୋପାଳବଲ୍ଲଭ ଓ ମାତା ବସନ୍ତ କୁମାରୀଙ୍କର ଦୁଇ ନୟନ । ସେହିଦିନ ଉତ୍କଳ-ମାତା ତାର ଏକ ଯୋଗ୍ୟା ସନ୍ତାନକୁ ପାଇ ଧନ୍ୟା ହୋଇ-ଉଠିଲା ।



## ରମାଦେବୀଙ୍କ ବାଲ୍ୟଜୀବନ

ଗୋପାଳବଲ୍ଲଭ ଓ ବସନ୍ତକୁମାରୀଙ୍କ ପାରିବାରିକ ଜୀବନ ବେଶ୍ ସୁଖମୟ ହୋଇଥିଲା । ସେ ଦୁଇକନ୍ୟା

ସନ୍ତାନଙ୍କୁ ପାଇ ଆନନ୍ଦିତ ଥିଲେ । ଗୋପାଳବଲ୍ଲଭ ଅଧିକାଂଶ ସମୟ ବାହାରେ କଟାଉ ଥିଲେ ।

ତେଣୁ ସେ ପିଲାମାନଙ୍କୁ ଗୋଟିଏ କଥା ବାରମ୍ବାର କହୁଥିଲେ—"ସବୁବେଳେ ସତ କହିବ । କାହା ମନରେ କେବେ ଆଘାତ ଦେବ ନାହିଁ ।"

ପିତାମାତାଙ୍କର ଏହି ଉପଦେଶ ବାଣୀ ରମାଦେବୀଙ୍କ ଉପରେ ବେଶ ପ୍ରଭାବ ପକାଇଥିଲା । ରମାଦେବୀଙ୍କୁ ଯେତେବେଳେ ୭।୮ ବର୍ଷ ହୋଇଥାଏ ସେହି ସମୟର କଥା ।

ଥରେ ରମାଦେବୀ ତାଙ୍କ ପୂଜାରୀକୁ ଗୋଟିଏ କାମ ବତାଇଲେ, କିନ୍ତୁ ପୂଜାରୀ ସେ କାମଟି କରିଦେଲା ନାହିଁ । ଫଳରେ ରମାଦେବୀ ବିରକ୍ତ ହୋଇ ପୂଜାରୀଙ୍କୁ କହିଲେ, "ତୁମେ ତ ଚାକିରୀ କରିଛ, କାହିଁକି କଥା ମାନିବ ନାହିଁ ।"

ପାଖ ଘରେ ରମାଦେବୀଙ୍କ ବାପା ସବୁ ଶୁଣୁଥିଲେ । ସେ ସଙ୍ଗେ ସଙ୍ଗେ ସେଠାକୁ ଆସି ଝିଅକୁ କହିଲେ—"ସେ ଆମ ଘରେ ଚାକିରୀ କରିଛି ବୋଲି କ'ଣ ଆମେ ତାକୁ କଷ୍ଟ ଦେବା । ଗାଳି ଦେଇ ତାଂ ମନ ଦୁଃଖ କରିବା ?

ରମାଦେବୀ ବାପାଙ୍କ କଥା ଶୁଣି ନିଜର ଭୁଲ ବୁଝିପାରିଲେ । ସେ ପରବର୍ତ୍ତୀ ସମୟରେ ନିଜକୁ ସଜାଡ଼ି ନେଲେ । କାହା ମନରେ ଆଘାତ ଦେବାଭଳି କଥା କହିଲେ ନାହିଁ । ରମାଦେବୀଙ୍କ ପାଠପଢ଼ା ଘରୋଇ ଶିକ୍ଷକଙ୍କ ଦ୍ୱାରା ହୋଇଥିଲା । କିନ୍ତୁ ରମାଦେବୀ ବିଶେଷ ଭାବରେ ତାଙ୍କ ମା'ଙ୍କ ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ ।

ରମାଦେବୀ ଯେତେବେଳେ ବାପାଙ୍କ ସହ ବିହାରର ମୋକାଫରପୁରରେ ରହୁଥିଲେ ସେହି ସମୟର ଘଟଣା । ସେ ଯେଉଁ ଘରେ ରହୁଥିଲେ ତା' ପାଖରେ ଗୋଟିଏ ଭଲ ବଗିଚା ଥିଲା । ସେହିଠାରେ ଦୁଇ ଭଉଣୀ ଖେଳୁଥିଲେ । ଦିନେ ବଗିଚାର ମାଳୀ ପିଲା ଦୁଇଟିଙ୍କୁ କିଛି ଫଳ ଦେଲା । ରମାଦେବୀ ଓ ତାଙ୍କ ଭଉଣୀ ଫଳଗୁଡ଼ିକୁ ଧରି ଘରକୁ ଆସିଲେ ।

ଫଳଗୁଡ଼ିକୁ ଦେଖି ଗୋପାଳବଲ୍ଲଭ କହିଲେ—"ଏ ଫଳଗୁଡ଼ିକ ମାଲିକଙ୍କୁ କହି ଆଣିଛ ? ଯଦି ନ କହି ଆଣିଥାଅ ତା'ହେଲେ ତୁମେ ଯାଇ ତାଙ୍କୁ ଏ ଫଳଗୁଡ଼ିକ ଫେରାଇ



ଦେଇ କ୍ଷମା ମାଗି ଆସ । କାରଣ କୌଣସି ଜିନିଷ ନ କହି ଆଣିବା ଚୋରି ସହିତ ସମାନ ।"

ଉମା ଓ ରମାଦେବୀ ଯାଇ ମାଲିକଙ୍କୁ କ୍ଷମା ମାଗି ସବୁ କଥା କହିଲେ । ପିଲା ଦୁଇଟିର କଥା ଶୁଣି ମାଲିକ

ଆନନ୍ଦିତ ହୋଇ ଆଉ କିଛି ଫଳ ଦେଇ ଘରକୁ ପଠାଇ ଦେଲେ । ରମାଦେବୀ ପିତାଙ୍କର ଏହି କଥାକୁ ଶେଷ ଜୀବନ ପର୍ଯ୍ୟନ୍ତ ମନେରଖି କାର୍ଯ୍ୟ କରିଥିଲେ ।

ପ୍ରତିଦିନ ସନ୍ଧ୍ୟାରେ ବସନ୍ତକୁମାରୀ ପିଲାଙ୍କୁ ଗଳ୍ପ ଶୁଣାଉ ଥିଲେ । ରାମାୟଣ, ମହାଭାରତ ଓ ମହାପୁରୁଷଙ୍କ କାହାଣୀ କହି ପିଲାମାନଙ୍କର ଗତିବିଧିକୁ ଲକ୍ଷ୍ୟ କରୁଥିଲେ । ବସନ୍ତକୁମାରୀଙ୍କର ସ୍ନେହପୂର୍ଣ୍ଣ ମାତୃବତ୍ସଳ ହୃଦୟର ପ୍ରଭାବ ରମାଦେବୀଙ୍କ ଉପରେ ବିଶେଷ ଭାବରେ ପ୍ରତିଫଳିତ ହୋଇଥିଲା । ଖୁଦୀରାମ, ଭଗତ ସିଂ, ଅରବିନ୍ଦଙ୍କ ବିଷୟରେ ବିଭିନ୍ନ କଥା ଶୁଣି ରମାଦେବୀ ଦେଶପ୍ରେମ ପ୍ରତି ଉଦ୍‌ବୁଦ୍ଧ ହୋଇଥିଲେ ।

ମୋଜାଫରପୁରରେ ଥିବା ସମୟରେ ଖୁଦୀରାମଙ୍କ ଫାଶୀ କଥା ଶୁଣି ସେ ନିର୍ଭିକ ଭାବରେ ପିତାଙ୍କ ଆଗରେ ଠିଆ ହୋଇ କହିଥିଲେ ଆପଣ ଖୁଦୀରାମଙ୍କ ଫାଶୀ ସମୟରେ ସେଠାରେ ରହିବେ ନାହିଁ ।"

ଏହା କହି ରମାଦେବୀ ଭେ ଭେ ହୋଇ କାନ୍ଦି ଉଠିଥିଲେ । ପିତା ଗୋପାଳବଲ୍ଲଭ ନିଜ ଝିଅର ଆଖିଲୁହ ଦେଖି ସହିପାରି ନ ଥିଲେ । ସେ ଝିଅର କଥାକୁ ରକ୍ଷାକରି ଫାଶୀଦିନ ଯାଇ ନ ଥିଲେ । ରମାଦେବୀଙ୍କୁ ବିଶେଷ ଭାବରେ ବିପ୍ଳବୀ ଅରବିନ୍ଦଙ୍କ ତ୍ୟାଗପୂତ ଜୀବନ କଥା ସ୍ପର୍ଶ କରିଥିଲା ।

## ରମାଦେବୀ ବିବାହ କଲେ

ରମାଦେବୀଙ୍କ ବୟସ ସେତେବେଳେ ୧୫ ବର୍ଷ । ଗୋକୁଳାନନ୍ଦ ଚୌଧୁରୀଙ୍କ ବଡ଼ପୁଅ ଗୋପବନ୍ଧୁ ଚୌଧୁରୀଙ୍କ

ସହ ରମାଦେବୀଙ୍କର ବିବାହ ପ୍ରସ୍ତାବ ଠିକ୍ ହୋଇଗଲା । ଉଭୟପକ୍ଷ ବିବାହ ଆୟୋଜନରେ ଲାଗିପଡ଼ିଲେ । ୧୯୧୪ ମସିହା ନଭେମ୍ବର ମାସ ୧୧ ତାରିଖ ଦିନ ମହାଆଡ଼ମ୍ବରରେ ବିବାହର ମାଙ୍ଗଳିକ ସାହାନାଇ ବାଜି ଉଠିଲା ।

ଖେରସରୁ ଏକ ବିରାଟ ପଟୁଆର ନେଇ ଗୋପବନ୍ଧୁ ଚୌଧୁରୀ ବରବେଶରେ ଆସି ସତ୍ୟଭାମାପୁରରେ ପହଞ୍ଚିଲେ । ଶହ ଶହ ଲୋକ ବରଯାତ୍ରୀରେ ଆସିଥିଲେ । ବିବାହର ସାଜସଜ୍ଜା ଓ ପଟୁଆର ଦେଖିବା ପାଇଁ ଆଖପାଖ ଗ୍ରାମଶଖଣ୍ଡ ମୌଜାରୁ ଲୋକ ଆସି ରୁଣ୍ଡ ହୋଇଥିଲେ ।

ମଧୁସୂଦନ ବାବୁ ରମାଦେବୀଙ୍କୁ ବେଶୀ ଭଲ ପାଉ-ଥିଲେ । ତେଣୁ ବିବାହର ସମସ୍ତ ଦାୟିତ୍ୱ ସେ ନିଜେ ନେଇ-ଥିଲେ । କାହାରି ଯେପରି କିଛି ଅସୁବିଧା ନ ହୁଏ ସେ ସବୁର ବନ୍ଦୋବସ୍ତ ସେ ଅତ୍ୟନ୍ତ ଶୃଙ୍ଖଳାର ସହ କରିଥିଲେ ।

ବେଶ୍ ଧୁମ୍‌ଧାମରେ ବିବାହ କାର୍ଯ୍ୟ ଶେଷ ହେଲା । ପରଦିନ ଗୁରୁବାର । ସେ ଦିନ ବର-କନ୍ୟାଙ୍କୁ ଛାଡ଼ିଲେ ନାହିଁ । ତା' ପରଦିନ ଶୁକ୍ରବାର କନ୍ୟା ବିଦା କଲେ । ରମାଦେବୀ ବୋହୂ ବେଶରେ ଯାଇ ଖେରସ ଗ୍ରାମରେ ଶ୍ୱଶୁର ଘରେ ସେ ଦିନ ସନ୍ଧ୍ୟାରେ ପହଞ୍ଚିଲେ ।

## ସୁନାନାକୀ ବୋହୂ ରମାଦେବୀ

ଜଣେ ଆଦର୍ଶ ବୋହୂ ଓ ସ୍ତ୍ରୀ ହେବାର ଯୋଗ୍ୟତା ରମାଦେବୀଙ୍କର ଥିଲା । ରମାଦେବୀ ଘରକରଣା କାମ ଅତି ଅଳ୍ପ ସମୟ ମଧ୍ୟରେ ମା' ବସନ୍ତ କୁମାରୀଙ୍କଠାରୁ ଶିଖିଥିଲେ ।

ମା'ଙ୍କର ପ୍ରତ୍ୟେକ କଥା ଓ କାର୍ଯ୍ୟ ରମାଦେବୀଙ୍କ ପାଇଁ ଆଣି ଦେଇଥିଲା ଏକ ସୁନାନାକୀ ବୋହୂର ମର୍ଯ୍ୟାଦା ।

ଶାଶୁ-ଶ୍ୱଶୁରଙ୍କ ସେବା କଲାବେଳେ ରମାଦେବୀଙ୍କର ମା ଙ୍କ କଥା ମନେ ପଡ଼ିଯାଏ—'ସମସ୍ତଙ୍କୁ ଭଲ ପାଇବୁ । ସମସ୍ତଙ୍କର ସେବା ଯତ୍ନ କରିବୁ । କାହାରିଠାରୁ କିଛି ଆଶା କରିବୁ ନାହିଁ । ଏପରି ଚଳିବୁ ଯେ ତୋତେ ଯେପରି କେହି ଅଲସେଇ ବୋଲି ନ କହେ ।' ମା'ଙ୍କର ସେହି କଥାଗୁଡ଼ିକୁ ପାଥେୟ କରି ରମାଦେବୀ ସମସ୍ତଙ୍କର ହୃଦୟକୁ ଜୟ କରି ଗଲେ । ଅତି ଅଳ୍ପ ସମୟ ମଧ୍ୟରେ ସେ ସମସ୍ତଙ୍କୁ ଆପଣାର କରିନେଲେ ।

ରମାଦେବୀଙ୍କର ଶାଶୁ ରମାଦେବୀଙ୍କୁ ଖୁବ୍ ଭଲ ପାଉଥିଲେ । କାରଣ ତାଙ୍କର ସାନପୁଅ ନବକୃଷ୍ଣ ଚୌଧୁରୀ ଏକ ବଙ୍ଗାଳୀ ଝିଅକୁ ବିବାହ କରିଥିଲେ । ତେଣୁ ସେ ତାଙ୍କର ସାନବୋହୂ (ମାଳତୀ ଦେବୀ)କୁ ରୋଷେଇ ଘରେ ଓ ଠାକୁର ଘରେ ପ୍ରବେଶ କରାଇ ଦିଆନ୍ତି ନାହିଁ । ବୁଢ଼ୀ ବଞ୍ଚିଥିବା ପର୍ଯ୍ୟନ୍ତ ବାରଣ କରିଥିଲେ ।

ରମାଦେବୀ ବଡ଼ ବୋହୂ । ସେ ଶାଶୁଙ୍କ ମନ ଜାଣି ସବୁ କାମ କରୁଥିଲେ । ଶାଶୁ-ଶ୍ୱଶୁରଙ୍କ ସମସ୍ତ ସ୍ନେହ-ମମତା ରମାଦେବୀଙ୍କ ଉପରେ ଝରି ପଡ଼ିଲା । ସେ ଚୌଧୁରୀ ବଂଶର ସୁନାନାକୀ ବୋହୂ ହୋଇ ରହିଲେ ।

## ରମାଦେବୀଙ୍କ ଶ୍ୱଶୁର ବିୟୋଗ

ରମାଦେବୀ ଚୌଧୁରୀ ପରିବାରକୁ ବୋହୂ ହୋଇ ଯିବା ଦିନଠାରୁ ଶ୍ୱଶୁରଙ୍କ ମୃତ୍ୟୁ ପର୍ଯ୍ୟନ୍ତ କୌଣସି କାମଧାମ

କର ନଥିଲେ । ଯଦି କେହି କହେ, ତା'ହେଲେ ତାଙ୍କ ଶ୍ୱଶୁର କହୁଥିଲେ—"ପିଲାଟା, ତା କାମ କରିବା ବେଳ କ'ଣ ଗ୍ଲଲଗଲାଣି । ଆଉ କିଛିଦିନ ଯାଉ । ସମୟ ଆସିଲେ ସେ ସବୁ କରିବ ।

୧୯୧୫ ମସିହା ଫେବୃୟାରୀ ୧୨ ତାରିଖ ଦିନ ଅପରାହ୍ନ ୩ଟା ବେଳେ ରମାଦେବୀଙ୍କ ଶ୍ୱଶୁର ଗୋକୁଳାନନ୍ଦ ଚୌଧୁରୀ ଦୁଇମହଲା କୋଠାରୁ ସିଢ଼ିରେ ଓହ୍ଲାଇଲାବେଳେ ଗୋଡ଼ ଖସିଯିବାରୁ ତଳେ ପଡ଼ି ବେହୋସ ହୋଇଗଲେ । ସଙ୍ଗେ ସଙ୍ଗେ ଡାକ୍ତର ଆସି ଚିକିତ୍ସା କଲେ । ସେ ସାମାନ୍ୟ ଆରୋଗ୍ୟ ହେଲେ । କିନ୍ତୁ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ନ ଥାଆନ୍ତି । ଦିନରାତି ରମାଦେବୀ ଶ୍ୱଶୁରଙ୍କ ସେବାରେ ଲାଗିଥାଆନ୍ତି ।



୧୪ ତାରିଖ ସକାଳୁ ଗୋକୁଳାନନ୍ଦ ଚୌଧୁରୀ ଗାଧୋଇବା ପାଇଁ ଗାଧୁଆ ଘରକୁ ଗଲେ । ଚାକର ସନିଆ ତାଙ୍କ ପଛେ ପଛେ ଯାଉଥାଏ । ଗାଧୁଆ ଘରେ ସେ ବାବୁଙ୍କ

ଅସ୍ୱାଭାବିକ ଅବସ୍ଥାରେ ଦେଖି ପାଟି କରି ସମସ୍ତଙ୍କୁ ଡାକ ପକାଇଲା ।

ସନିଆର ଡାକ ଶୁଣି ସମସ୍ତେ ପହଞ୍ଚିଗଲେ । ଧରାଧରି କରି ଘରକୁ ଆଣିଲେ । ଚୌଧୁରୀଙ୍କ ଅବସ୍ଥା ଦେଖି ଚୌଧୁରୀ ବୁଢ଼ୀ ସମସ୍ତ ଜାଣିପାରିଲେ । ସେ ବୋହୂ ରମା-ଦେବୀଙ୍କୁ କହିଲେ—'ବୋହୂ ; ତୋ ଶ୍ୱଶୁରଙ୍କ ମୁହଁରେ କିଛି ସନ୍ଦେଶ ଦେ । ରମାଦେବୀ ସଙ୍ଗେ ସଙ୍ଗେ କିଛି ସନ୍ଦେଶ ତାଙ୍କ ପାଟିରେ ଦେଲେ । ବହୁ କଷ୍ଟରେ ଚୌଧୁରୀ ତାହା ଖାଇଲେ ।

ଚୌଧୁରୀଙ୍କ ମୁଣ୍ଡ ଉପରେ ତୁଳସୀ ଗଛ ରଖାଗଲା । ରମାଦେବୀ ଶ୍ୱଶୁରଙ୍କ ମୁଖରେ ଗଙ୍ଗାଜଳ ଓ ମହାପ୍ରସାଦ ଦେଲେ । ପରିବାର ମଧ୍ୟରେ ଖେଳିଗଲା ଶୋକର ଛାୟା । ଠିକ୍ ସକାଳ ୭ଟା ବେଳେ ଗୋକୁଳାନନ୍ଦ ଚୌଧୁରୀ ସମସ୍ତଙ୍କୁ ଛାଡ଼ି ଇହଧାମ ତ୍ୟାଗ କଲେ । ସମସ୍ତେ ହୋ ହୋ ହୋଇ କାନ୍ଦି ଉଠିଲେ । ରମାଦେବୀଙ୍କ ଆଖିରୁ ଶ୍ରାବଣୀ ଧାରା ପରି ବୋହି ଚାଲିଲା ଲୁହ । ଶ୍ୱଶୁରଙ୍କ ବିୟୋଗ ରମାଦେବୀଙ୍କୁ ଦେଲା କଠୋର ଆଘାତ ।

ସେ ଆଘାତରେ ରମାଦେବୀ ଭାଙ୍ଗି ପଡ଼ିଲେ । ତାଙ୍କୁ ଯେ ଅତି ଭଲ ପାଉ ପାଉଥିଲେ । ସାଙ୍ଗରେ ଧରି ଖାଉଥିଲେ ସେ ତାଙ୍କୁ ସବୁଦିନ ପାଇଁ ଏକାକରି ଚାଲିଗଲେ । ଶ୍ୱଶୁର ଥିବାବେଳେ ରମାଦେବୀ କିଛି କରୁ ନ ଥିଲେ । ଏବେ ତାଙ୍କ ବିୟୋଗରେ ତାଙ୍କ ଉପରେ ଆସି ଅନେକ କାମ ଲଦି ହୋଇଗଲା ।

## ସ୍ୱାଧୀନତା ଆନ୍ଦୋଳନ ପାଇଁ ମାୟା

୧୯୨୦ ମସିହାରେ ନାଗପୁରଠାରେ କଂଗ୍ରେସ ଅଧିବେଶନ ବସିଲା । ଉକ୍ତ ଅଧିବେଶନରେ ସ୍ଥିର ହେଲା ସାରା ଦେଶରେ ଅସହଯୋଗ ଆନ୍ଦୋଳନ କରାଯିବ । ଏହି ଅଧିବେଶନରେ ଯୋଗ ଦେବାପାଇଁ ଓଡ଼ିଶାରୁ ଗୋପବନ୍ଧୁ ଦାଶ ଯାଇଥିଲେ ।

ରମାଦେବୀ ଗାନ୍ଧିଜୀଙ୍କ କଥା ଓ କଂଗ୍ରେସର ଖବର କିଛି କିଛି ଶୁଣିବାକୁ ପାଉଥିଲେ । ସାରଳା ଦେବୀଙ୍କ ଆହ୍ୱାନରେ ସମସ୍ତ ବାଧାବନ୍ଧନକୁ ଛିଡ଼ାଇ ନାରୀମାନେ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଉଥିବାର ଖବର ମଧ୍ୟ ରମାଦେବୀ ଶୁଣୁଥାଆନ୍ତି । ଏହିସବୁ ଖବର ଶୁଣି ରମାଦେବୀଙ୍କ ମନରେ ସ୍ୱାଧୀନତା ପ୍ରତି ଏକ ଅହେତୁକ ମାୟା ଜନ୍ମି ଉଠିଲା । ସେ କପରି ସ୍ୱାଧୀନତା ସଂଗ୍ରାମରେ ଝାସ ଦେବେ ଭାବିବାକୁ ଲାଗିଲେ ।

ଗୋପବନ୍ଧୁ ଦାଶ ନାଗପୁରରୁ ଫେରି କଟକ କାଠଯୋଡ଼ି କୂଳରେ ଏକ ସଭାର ଆୟୋଜନ କଲେ । ଏ ଖବର ପାଇ ରମାଦେବୀ ଚଞ୍ଚଳ ହୋଇ ଉଠିଲେ । ସେ କପରି ସେ ସଭାରେ ଯୋଗ ଦେବେ ସେଥିପାଇଁ ତାଙ୍କ ଶାଶୁଙ୍କୁ ଅନୁରୋଧ କଲେ । ଶାଶୁଙ୍କର ଅନୁମତି ପାଇ ରମାଦେବୀ ଭାଷଣ ଶୁଣିବାକୁ ଗଲେ ।

ଗୋପବନ୍ଧୁ ଦାଶଙ୍କର ଭାଷଣ ଶୁଣି ରମାଦେବୀଙ୍କର ସୁପ୍ତ ଚେତନା ଧୀରେ ଧୀରେ ଜାଗ୍ରତ ହୋଇ ଉଠିଲା ! ସେ

ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେବାପାଇଁ ସ୍ଥିର ସିଦ୍ଧାନ୍ତ ଗ୍ରହଣ କରିଥିଲେ ।

## ରମାଦେବୀ ଖଦୀ ପିନ୍ଧିଲେ

ରମାଦେବୀଙ୍କର କୌଣସିଥିରେ ଅଭାବ ନ ଥିଲା । ସେ ଧନର ଐଶ୍ୱର୍ଯ୍ୟ ମଧ୍ୟରେ ପିଲାଟି ଦିନରୁ ବଢି ଆସିଥିଲେ । ଶାଶୁଘରେ ମଧ୍ୟ କୌଣସି ଦୁଃଖ ସେ ପାଇ ନାହାନ୍ତି । ଧନସମ୍ପତ୍ତିର କୌଣସି ଅଭାବ ନାହିଁ । କିନ୍ତୁ ରମାଦେବୀ ସେ ଆଭିଜାତ୍ୟର ଅଭିମାନକୁ ଦୂରକୁ ଫିଙ୍ଗି ଦେଇ ଖଦଡ଼ ପିନ୍ଧିବା ପାଇଁ ସ୍ଥିର କରିନେଲେ ।

ସେତେବେଳେ ଆମ ରାଜ୍ୟର ନୟାଗଡ଼କୁ ଛାଡ଼ିଦେଲେ ଅନ୍ୟ କୌଣସିଠାରେ କପା ଚାଷ ହେଉ ନ ଥିଲା । କେବଳ ସେହି ଅଞ୍ଚଳରେ ତନ୍ତୀମାନେ ଲୁଗା ବୁଣୁଥିଲେ । ରମାଦେବୀ ଯେତେବେଳେ ଖଦଡ଼ ପିନ୍ଧିବା ପାଇଁ ସ୍ଥିର କରିନେଲେ, ଗୋପବନ୍ଧୁ ଚୌଧୁରୀ ଯାଇ ନୟାଗଡ଼ରୁ ଦୁଇଖଣ୍ଡ ଧୋତି ଓ ୨ ଖଣ୍ଡ ଶାଢ଼ୀ ଆଣିଲେ ।

ରମାଦେବୀ ପ୍ରଥମ କରି ଖଦଡ଼ ପିନ୍ଧିଲେ । ତାଙ୍କର ପିନ୍ଧା ଦେଖି ଅନେକ ଥଟ୍ଟା ପରିହାସ କଲେ । କିନ୍ତୁ ସେଥିପ୍ରତି ରମାଦେବୀ ଦୃଷ୍ଟି ଦେଲେ ନାହିଁ । ସେ ନିଜର କର୍ତ୍ତବ୍ୟ କରି ଚାଲିଲେ । ତାପରେ ଯେତେବେଳେ ଅଲକାଶ୍ରମରେ ଖଦୀ ଉତ୍ପାଦନ କରାଗଲା, ସେଠାରୁ ରମାଦେବୀଙ୍କ ପାଇଁ ଖଦୀ ଆସିଲା । ରମାଦେବୀଙ୍କ ପ୍ରଭାବରେ ଅନ୍ୟମାନେ ମଧ୍ୟ ଖଦଡ଼ ପିନ୍ଧିଲେ । ଏପରିକି ତାଙ୍କ ପରିବାରର ସମସ୍ତେ ଖଦୀ ପିନ୍ଧିଲେ ।'

# ଗାନ୍ଧିଜୀଙ୍କ ସଭାରେ ରମାଦେବୀ

୧୯୨୧ ମସିହାରେ ପ୍ରଥମଥର ପାଇଁ ଗାନ୍ଧିଜୀ ଓଡ଼ିଶା ଆସିଲେ । ବିନୋଦବିହାରୀ ମନ୍ଦିରଠାରେ ମହିଳାମାନଙ୍କ ସଭାରେ ଗାନ୍ଧିଜୀ ଉଦ୍‌ବୋଧନ ଦେବାର ସ୍ଥିର ହେଲା । ମନ୍ଦିରର ପ୍ରାଙ୍ଗଣଟିକୁ ସମସ୍ତେ ସଫାସୁତୁରା କରିବାରେ ଲାଗି ପଡ଼ିଲେ ।

ରମାଦେବୀ ଆଗରୁ ଗାନ୍ଧିଜୀଙ୍କୁ ଦେଖି ନ ଥିଲେ । ତାଙ୍କୁ ଦେଖିବା ପାଇଁ ଏବଂ ତାଙ୍କର ଭାଷଣ ଶୁଣିବା ପାଇଁ



ସେ ବ୍ୟଗ୍ର ହୋଇ ଉଠିଲେ । କିପରି ସେ ସଭାକୁ ଯିବେ ଚିନ୍ତା କରିବାକୁ ଲାଗିଲେ ।

ଶାଶୁଙ୍କ ବିନାନୁମତିରେ ସେ ଯାଇ ପାରିବେ ନାହିଁ । ତେଣୁ ସେ ଶାଶୁଙ୍କୁ ସଭାରେ ଯୋଗ ଦେବା ପାଇଁ ଅନୁମତି ମାଗିଲେ । ବୋହୂର ଜିଦ୍ ଦେଖି ଶାଶୁ ରମାଦେବୀଙ୍କୁ

ସଭାକୁ ଯିବାପାଇଁ ଅନୁମତି ଦେଲେ । ରମାଦେବୀ ଆନନ୍ଦିତ ହୋଇ ବିନୋଦବିହାରୀ ମନ୍ଦିରରେ ପହଞ୍ଚିଲେ ।

ପ୍ରାୟ ଚାଳିଶ ଜଣ ମହିଳା ସଭାରେ ଉପସ୍ଥିତ ଥିଲେ। ଠିକ୍ ସମୟରେ ଗାନ୍ଧିଜୀ ଆସି ପହଞ୍ଚିଲେ । ଗାନ୍ଧିଜୀ ମହିଳା-ମାନଙ୍କୁ ସମ୍ବୋଧନ କରି କହିଲେ, 'ମୋର ବିଶ୍ୱାସ ନାରୀମାନେ ସ୍ୱାଧୀନତା ସଂଗ୍ରାମରେ ସମ୍ପୂର୍ଣ୍ଣ ରୂପେ ଭାଗ ନେବେ । ମୁଁ ତୁମମାନଙ୍କଠାରୁ ଏହାହିଁ ଆଶା କରେ । ଆମ କାମ ଏତେ ସରଳ ଯେ କେବଳ ନାରୀମାନେ ହିଁ ଏହାକୁ ଅନାୟାସରେ ପରିଚାଳନା କରିପାରିବେ ।

ଭାରତର ନାରୀଶକ୍ତି ଉପରେ ମୁଁ ଯଥେଷ୍ଟ ଆଶା ଓ ବିଶ୍ୱାସ ରଖି ଅସହଯୋଗ ଆନ୍ଦୋଳନର ଡାକରା ଦେଇଛି । ତେଣୁ ତୁମ୍ଭେମାନେ ଦେଶର ସ୍ୱାଧୀନତା ପାଇଁ କାମ କର । ଗହଣା ପିନ୍ଧିବା ଛାଡ଼ି ଦିଅ । ନିଜର ଗହଣାଗୁଡ଼ିକୁ ଦେଶ କାମ ପାଇଁ ଦାନକର ।'

ଗାନ୍ଧିଜୀଙ୍କ ଭାଷଣ ଶୁଣି ଉପସ୍ଥିତ ମହିଳାମାନଙ୍କ ଭିତରୁ କେତେଜଣ ଟଙ୍କା, ଗହଣାଗାଣ୍ଠି ନେଇ ଗାନ୍ଧିଜୀଙ୍କ ହାତରେ ଦେଲେ । ଶେଷରେ ରମାଦେବୀଙ୍କ ପାଳି ପଡ଼ିଲା । ଶାଶୁ ତାଙ୍କୁ ଗହଣାଗାଣ୍ଠି ଦେବାକୁ ମନା କରି ଦେଇଥିଲେ । ତେଣୁ ସେ ଶାଶୁଙ୍କ କହିବାନୁଯାୟୀ ସୂତାମୋଡ଼ା (ଅରଟ)ଟିକୁ ଗାନ୍ଧିଜୀଙ୍କୁ ଦେଲେ । ଗାନ୍ଧିଜୀ କିଛି ସମୟ ପାଇଁ ଅପଲକ ନୟନରେ ରମାଦେବୀଙ୍କୁ ଚାହିଁ ରହିଲେ । ଅନ୍ୟମାନେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ।

ଗାନ୍ଧିଜୀଙ୍କ କଥାଗୁଡ଼ିକ ରମାଦେବୀଙ୍କୁ ବେଶ୍ ଛୁଇଁ ପାରିଥିଲା । ସେହିଦିନ ଠାରୁ ରମାଦେବୀ ଗହଣା ପିନ୍ଧିବା ଛାଡ଼ି ଦେଲେ । ନିଜର ଶହେ ଭରି ସୁନାଗହଣାକୁ ସେ ଆନ୍ଦୋଳନ ପାଇଁ ଦାନ କରିଦେଲେ । ସମସ୍ତ ମୋହ ମମତାକୁ ତୁଚ୍ଛ କରି ରମାଦେବୀ ଦେଶସେବା କରିବା ପାଇଁ ବ୍ରତୀ ହେଲେ ।

## ଆଶ୍ରମ ଜୀବନ ଆରମ୍ଭ

ରମାଦେବୀ ନିଜ ଜୀବନକୁ ଏକ ସରଳ ଓ କଠୋର ଜୀବନ ମାଧ୍ୟମରେ ବିତାଇବା ପାଇଁ ସ୍ଥିର କଲେ । ନିଜର ସ୍ୱାମୀ ଓ ଦୁଇ ପିଲାଙ୍କୁ ନେଇ ସେ ଅଲକା ଆଶ୍ରମରେ ଯାଇ ରହିଲେ । ଅଲକା ଆଶ୍ରମଟି ଜଗତସିଂହପୁରର ଏକ ନିପଟ ମଫସଲ ଭିତରେ ଅବସ୍ଥିତ ।

ପିଲାଟି ଦିନରୁ ଅଲଅଲରେ ବଢ଼ି ଆସିଥିବା ରମା-ଦେବୀ ସମସ୍ତ ସୁଖକୁ ପାଦରେ ଠେଲି ଦେଇ ଗାଉଁଲୀ ଜୀବନ ଆରମ୍ଭ କଲେ । ଗାଁ ଲୋକଙ୍କ ସହ ମିଶି ସେମାନଙ୍କ ଦୁଃଖସୁଖର ସାଥୀ ହେଲେ ।

ଖରା, ବର୍ଷା, ଶୀତ, କାକରକୁ ନ ମାନି ରମାଦେବୀ ଗାଁ ଗାଁ ବୁଲି ଲୋକମାନଙ୍କୁ କ'ଣ କ'ଣ କରିବାକୁ ହେବ ସବୁ ବୁଝାଇଲେ । ଗାଁ ଲୋକଙ୍କୁ ସାଙ୍ଗରେ ଧରି ସଫେଇ କାମ କଲେ । ରୋଗୀମାନଙ୍କର ସେବା କଲେ । ସେମାନଙ୍କ ଦୁଃଖରେ ସମଭାଗୀ ହେଲେ । ଅଲକା ଆଶ୍ରମରେ ରହି ରମାଦେବୀ ତାଙ୍କର କାର୍ଯ୍ୟକୁ ତ୍ୱରାନ୍ୱିତ କରିବାକୁ ଲାଗିଲେ ।

# ରମାଦେବୀ ଜେଲଗଲେ

୧୯୩୦ ମସିହା ଜାନୁଆରୀ ମାସ ୨ ତାରିଖ ଦିନ ଭାରତୀୟ କଂଗ୍ରେସ କମିଟିର ବୈଠକରେ ସମଗ୍ର ଦେଶରେ ପୂର୍ଣ୍ଣ ସ୍ୱରାଜ ଦିବସ ପାଳନ କରାଯିବ ବୋଲି ସ୍ଥିର ହେଲା । ଜାନୁଆରୀ ୨୬ ତାରିଖଠାରୁ ପାଳନ କରାଯିବ ବୋଲି ନିର୍ଦ୍ଦିଷ୍ଟ କରାଗଲା । ସେହିଦିନଠାରୁ ପିକେଟିଂ, ବିଲାତି ଜିନିଷ ବର୍ଜନ କାମରେ କଂଗ୍ରେସ କର୍ମୀ ମାତି ଉଠିଲେ । ସାରା ଦେଶରେ 'ସ୍ୱରାଜ' ବିପ୍ଳବର ଝଡ଼ ଖେଳିଗଲା ।

ଇଂରେଜ ସରକାରର ଅକଥନୀୟ ଅତ୍ୟାଚାର କଂଗ୍ରେସ କର୍ମୀଙ୍କ ଉପରେ ବଢି ଚାଲିଲା । ଓଡ଼ିଶା ପ୍ରଦେଶ କଂଗ୍ରେସ କମିଟିର ସଭ୍ୟମାନେ ବିହାର-ଓଡ଼ିଶା କାଉନ୍‌ସିଲ୍‌ରୁ ଇସ୍ତଫା ଦେଲେ । ଆନ୍ଦୋଳନ ବଢ଼ି ଚାଲିଲା । ସେତେବେଳେ ପ୍ରଦେଶ କଂଗ୍ରେସ ସଭାପତି ପଣ୍ଡିତ ଲିଙ୍ଗରାଜ ମିଶ୍ର ଥାଆନ୍ତି । ସ୍ୱରାଜ ଆନ୍ଦୋଳନରେ ପଣ୍ଡିତ ମିଶ୍ର ଏବଂ ମାଳତୀ ଚୌଧୁରୀଙ୍କୁ ବନ୍ଦୀ କରି କାରାଗାରକୁ ପଠାଇ ଦେଲେ ।

ଆନ୍ଦୋଳନକୁ ଚଳାଇ ରଖିବା ପାଇଁ ପଣ୍ଡିତ ଲିଙ୍ଗରାଜ ମିଶ୍ର ବନ୍ଦୀ ହେବା ପୂର୍ବରୁ ତାଙ୍କର ସମର୍ଥକ ରମାଦେବୀଙ୍କୁ ମନୋନୀତ କରିଥିଲେ । ସେ ଦକ୍ଷତାର ସହ ତାଙ୍କର କାର୍ଯ୍ୟ କରୁଥାନ୍ତି । ନିର୍ଭିକ ରମାଦେବୀଙ୍କର କାର୍ଯ୍ୟକଳାପ ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଯାଉ ଥାଆନ୍ତି ।

ନଭେମ୍ବର ମାସ ୭ ତାରିଖ ଦିନ ପୋଲିସ୍ ରମାଦେବୀଙ୍କୁ କଟକଠାରେ ଆରେଷ୍ଟ କଲା । ଏ ଖବର ସଙ୍ଗେ

ସଙ୍ଗେ ଚାରିଆଡ଼େ ବ୍ୟାପିଗଲା । ରମାଦେବୀଙ୍କ ଆରେଷ୍ଟ ସମସ୍ତଙ୍କ ମନରେ ଏକ ଅହେତୁକ ଆବେଗ ସୃଷ୍ଟି କଲା । କଟକ ସହର ତାତି ଉଠିଲା । ହରତାଳ, ପିକେଟିଂ, ବୟକଟ୍ ଆଦିର କେନ୍ଦ୍ରସ୍ଥାନ ହୋଇ ଉଠିଲା ।

ରମାଦେବୀଙ୍କୁ ଭାଗଲପୁର ଜେଲ୍‌ରେ ନେଇ ରଖିଲେ । ଜେଲ୍ ଦଣ୍ଡ ସହିତ ତାଙ୍କୁ କିଛି ଟଙ୍କା ମଧ୍ୟ ଜୋରିମାନା କରାଯାଇ ଥିଲା । ରମାଦେବୀ ଭାଗଲପୁର ଜେଲ୍‌ରେ ଆଠମାସ କାରାଦଣ୍ଡ ଭୋଗ କରି ମୁକ୍ତ ହେଲେ ।




## ରମାଦେବୀଙ୍କୁ ସମ୍ବର୍ଦ୍ଧନା ଦେଲେ

ଭାଗଲପୁର ଜେଲରୁ ମୁକ୍ତ ହୋଇ ରମାଦେବୀ କଟକ ଫେରିଲେ । ଗାଡ଼ି ଷ୍ଟେସନ ପରେ ଷ୍ଟେସନ ପାର ହୋଇ ତାର ଗନ୍ତବ୍ୟ ପଥରେ ଆଗେଇ ଚାଲିଥାଏ । ରମାଦେବୀ ଫେରୁଥିବାର ଶୁଣି ପ୍ରତ୍ୟେକ ଷ୍ଟେସନରେ ଶହ ଶହ ଲୋକ ରୁଣ୍ଡ ହୋଇଥାଆନ୍ତି । ଗାଡ଼ି ଷ୍ଟେସନରେ ପହଞ୍ଚିଲା

ମାନେ ରମାଦେବୀଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରି-ଗଲେ ।

ପ୍ରାୟ୍ତ ଦିନ ଗୋଟାଏବେଳେ ରମାଦେବୀ କଟକ ଷ୍ଟେସନରେ ପହଞ୍ଚିଲେ ସେଦିନ ଷ୍ଟେସନରେ ଏତେଲୋକ ଭିଡ଼ ଯେ, ନ ଦେଖିବା ଲୋକ କଳ୍ପନା କରିପାରିବ ନାହିଁ । ଖୋଳ କରତାଳ ଶବ୍ଦରେ ଗଗନପବନ କମ୍ପି ଉଠୁଥାଏ । ସାରା କଟକସହର ଆନନ୍ଦ ଉଲ୍ଲାସରେ ମୁଖରିତ ହୋଇ ଉଠୁଥାଏ ।

ଗାଡ଼ିରୁ ଓହ୍ଲାଉ ଓହ୍ଲାଉ ରମାଦେବୀଙ୍କ ଉପରେ ଅସଂଖ୍ୟ ଫୁଲମାଳ ଓ ଫୁଲର ବର୍ଷା ଆରମ୍ଭ ହୋଇଗଲା । ଏକ ବିରାଟ ପଟୁଆର ଷ୍ଟେସନରୁ ବାହାରି ରାଣୀହାଟ, ମଙ୍ଗଳାବାଗ, ବକ୍ସିବଜାର ଦେଇ ଜୈନ ମନ୍ଦିର ପର୍ଯ୍ୟନ୍ତ ଗଲା । ଯିବା ବାଟରେ ପ୍ରତ୍ୟେକ ଛକ ଜାଗାରେ ରମାଦେବୀଙ୍କୁ ସମ୍ବର୍ଦ୍ଧନା ଦିଆଯାଉଥାଏ । କଟକ ସହରର ମହିଳାମାନଙ୍କ ତରଫରୁ ରମାଦେବୀଙ୍କୁ ଫୁଲମାଳ, ଚନ୍ଦନ ଦେଇ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା ।

କାଠଯୋଡ଼ି ବାଲିପଠାରେ ଏକ ବିରାଟ ଜନସମାବେଶର ଆୟୋଜନ ହେଲା । ଉକ୍ତ ସଭାରେ ଆଚାର୍ଯ୍ୟ ହରିହର ସଭାପତିତ୍ୱ କଲେ । ଗୋପବନ୍ଧୁ ଚୌଧୁରୀ, ପଣ୍ଡିତ ନୀଳକଣ୍ଠ ଭାଷଣ ଦେଲେ । ଶେଷରେ ରମାଦେବୀ ତାଙ୍କର ଭାଷଣରେ ବାନରସେନାଙ୍କ ପ୍ରତି ହୋଇଥିବା ଅତ୍ୟାଚାରର କରୁଣ କାହାଣୀ ବର୍ଣ୍ଣନା କଲେ ।

ମମତାମୟୀ ମା' ରମାଦେବୀ କହୁ କହୁ କାନ୍ଦି ପକାଇଲେ । ରମାଦେବୀଙ୍କର ଏହି ଉତ୍ସାହ ଓ ଆବେଗ ଦେଖି ଅନେକ ନାରୀ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଲେ । ରମାଦେବୀଙ୍କର ସାହସ ଦେଖି ସମସ୍ତେ ତାଙ୍କୁ ପ୍ରଶଂସା କଲେ ।

## ଇଞ୍ଚୁଡ଼ିରେ ଲୁଣ ମାରିଲେ

ଇଂରେଜ ସରକାର ଲୁଣ ଉପରେ କଟକଣା କରି କରି ବସାଇଲେ । ଏହି ଅନ୍ୟାୟ ବିରୁଦ୍ଧରେ ଆନ୍ଦୋଳନ ହେଲା । ୧୯୩୦ରେ ମହାତ୍ମାଗାନ୍ଧୀ ଲବଣ ସତ୍ୟାଗ୍ରହର ଡାକରା ଦେଲେ ।

ରମାଦେବୀ ଗାନ୍ଧିଜୀଙ୍କ ଡାକରା ଶୁଣି ସ୍ଥିର ହୋଇ ରହିପାରିଲେ ନାହିଁ । ସେ ଲବଣ ସତ୍ୟାଗ୍ରହରେ ଯୋଗ ଦେବାପାଇଁ ବାହାରି ପଡ଼ିଲେ । ପୋଲିସର ଦମନଲୀଳାକୁ ଭ୍ରୂକ୍ଷେପ ନ କରି ରମାଦେବୀ ଯାଇ ବାଲେଶ୍ୱରରେ ପହଞ୍ଚିଲେ । ସେଠାରେ ସେ ଇଞ୍ଚୁଡ଼ିଠାରେ ଲୁଣ ମାରିଲେ । ଆଖପାଖ ଗାଁରେ ବୁଲି ମହିଳାମାନଙ୍କୁ ଲବଣ ସତ୍ୟାଗ୍ରହରେ ଯୋଗ ଦେବାପାଇଁ ଅନୁରୋଧ କଲେ ।

ରମାଦେବୀଙ୍କର ସାହସ ଦେଖି ତାଙ୍କ କଥାରେ ବିଶ୍ୱାସ କରି ଶହ ଶହ ମହିଳା ତାଙ୍କୁ ସହଯୋଗ ଦେଲେ । ଇଞ୍ଚୁଡ଼ିରେ ଲୁଣମରା କାର୍ଯ୍ୟ ଶେଷ କରି ରମାଦେବୀ ଶ୍ରୀଜଙ୍ଗ ଅଭିମୁଖେ ଆଗେଇ ଗଲେ ।

ଶ୍ରୀଜଙ୍ଗରେ ପହଞ୍ଚି ସେଠାରେ ସେ ଲୁଣମରା ଆରମ୍ଭ କରିଦେଲେ । ସେତେବେଳକୁ ବର୍ଷା ସମୟ ଆସି ଯାଇଥାଏ ।

ବର୍ଷା ପାଣି କାଦୁଅକୁ ନ ଡରି ରମାଦେବୀ ଗାଁ ଗାଁ ବୁଲି ଲୋକମାନଙ୍କୁ ବୁଝାଇ ସମସ୍ତ କାର୍ଯ୍ୟ ଆଗେଇ ନେଉଥାଆନ୍ତି । ରମାଦେବୀ କାମରେ ଏପରି ମଜ୍ଜି ଯାଇଥିଲେ ଯେ ଶୋକ-ଶୋଷ ମଧ୍ୟ ଭୁଲି ଯାଉଥିଲେ ।

## ମହିଳା ସମ୍ମିଳନୀରେ ରମାଦେବୀ

୧୯୩୧ ମସିହା ଅଗଷ୍ଟ ମାସରେ ବାଲେଶ୍ୱରରେ ଏକ ନିଖିଳ ଉତ୍କଳ ମହିଳା ସମ୍ମିଳନୀର ଆୟୋଜନ କରାଗଲା । କୁମୁଦିନୀ ଦେବୀ, କୋକିଳ ଦେବୀ ଓ ଜାହ୍ନବୀ ଦେବୀଙ୍କ ପ୍ରଚେଷ୍ଟାରେ ଏହି ସମ୍ମିଳନୀଟି ବାଲେଶ୍ୱରଠାରେ ଅନୁଷ୍ଠିତ ହେଲା ।

ରମାଦେବୀଙ୍କର ଆଦର୍ଶ ଓ କର୍ମତତ୍ପରତା ଉତ୍କଳୀୟ ନାରୀମାନଙ୍କ ମନରେ ପ୍ରେରଣା ଦେଇପାରି ଥିଲା । ତାଙ୍କୁହିଁ ଘାଥେଯ୍ୟ କରି ବିଭିନ୍ନ ଅଞ୍ଚଳରୁ ବହୁ ମହିଳା ବାଲେଶ୍ୱର ସମ୍ମିଳନୀରେ ଯୋଗ ଦେଲେ । ଏହି ସମ୍ମିଳନୀରେ ରମାଦେବୀ, ମାଳତୀ ଦେବୀ, ଜାହ୍ନବୀ ଦେବୀ ପ୍ରଭୃତି ମହୀୟସୀ ମହିଳାମାନେ ଯୋଗ ଦେଇଥିଲେ ।

ଉତ୍କଳ ଖ୍ୟାତନାମା ନାରୀକବି କୁନ୍ତଳାକୁମାରୀ ସାବତ ଏହି ସମ୍ମିଳନୀରେ ସଭାପତି ଆସନ ଅଳଂକୃତ କରିଥିଲେ । ରମାଦେବୀଙ୍କର ହୃଦୟସ୍ପର୍ଶୀ ଭାଷଣ ଶୁଣି ଅନେକ ନାରୀ ନିଜ ଜୀବନକୁ ଦେଶସେବାରେ ଉତ୍ସର୍ଗ କରିଦେଲେ ।

ମହିଳା ସମ୍ମିଳନୀରେ ରମାଦେବୀଙ୍କର ଅଭୂତପୂର୍ବ ଉଦ୍‌ବୋଧନ ଶୁଣି ତାଙ୍କୁ ସମସ୍ତେ ଧନ୍ୟ ଧନ୍ୟ କହିଲେ ।

କିନ୍ତୁ ରମାଦେବୀ ସେସବୁ ପ୍ରଶଂସା ଶୁଣିବାକୁ ଚାହୁଁ ନଥିଲେ । ସେ କହୁଥିଲେ—"ମୁଁ ଦେଶପାଇଁ କିଛି କରିବି । ସେବା ମୋର ଧର୍ମ । ତେଣୁ ମୁଁ ମୋର କର୍ତ୍ତବ୍ୟ କରୁଛି । ଏଥିରେ ପ୍ରଶଂସାର ସ୍ଥାନ ଆସିଲା କେଉଁଠୁ ?" ଧନ୍ୟ ସେ ନାରୀ । ଯିଏ ପରପାଇଁ ସବୁବେଳେ ଚିନ୍ତା କରୁଥିଲେ ।



ନିଜ ଜୀବନକୁ ତିଳ ତିଳ କରି ଜାଳି ସେ ଦିନରାତି ଦେଶସେବାରେ ନିଜକୁ ହଜାଇ ଦେଇଥିଲେ । ସେଥିରେ ଥିଲା ରମାଦେବୀଙ୍କର ଆନନ୍ଦ । କାମ ଓ ସେବା ବ୍ୟତୀତ ସେ ଆଉ କିଛି ଚିନ୍ତା କରିବାର କେହି କେବେ ଜାଣି ନାହାନ୍ତି ।

## ସାହସିନୀ ରମାଦେବୀ

କୁଜଙ୍ଗରେ ଲୁଣମରା ହେବା କଥା ରମାଦେବୀ ଅଲକା ଆଶ୍ରମରେ ଥାଇ ଶୁଣିଲେ । ସେ ସଙ୍ଗେ ସଙ୍ଗେ କୁଜଙ୍ଗ ବାହାରି ପଡ଼ିଲେ । କୁଜଙ୍ଗରେ ପହଞ୍ଚିବା ପରେ ରମାଦେବୀଙ୍କୁ କାଳିଆପାଟର ଲୁଣମରା ଦାୟିତ୍ୱ ଦେଲେ ।

କାଳାପାଣିର ଲୋକଙ୍କୁ ରମାଦେବୀ ବୁଝାଇଲେ । ହେଲେ ଲୋକମାନେ ତାଙ୍କ କଥାକୁ ଶୁଣିଲେ ନାହିଁ ।

ସେମାନେ କହିଲେ, ରାଣୀଙ୍କ ବିନାନୁମତିରେ ଆମେ ଲୁଣ ମାରିବୁ ନାହିଁ । ଏକଥା ଶୁଣି ରମାଦେବୀ ବିବ୍ରତ ନ ହୋଇ କିପରି ରାଣୀଙ୍କୁ କାଳାପାଣି ଆଣିବେ ସେ ବିଷୟରେ ଚିନ୍ତା କରିବାକୁ ଲାଗିଲେ ।

ପୋଲିସର କଡ଼ା ପହରା । ମାଜିଷ୍ଟ୍ରେଟଙ୍କ ବିନାନୁମତିରେ ଡଙ୍ଗାରେ କେହି ନଈପାରି ହୋଇ ପାରିବେ ନାହିଁ । ଏତେ କଟକଣା ସତ୍ତ୍ୱେ ରମାଦେବୀ ସାହସର ସହ ଡଙ୍ଗାଟିଏ ଯୋଗାଡ଼ କରି ରାଣୀଙ୍କୁ ଆଣିବା ପାଇଁ ସ୍ଥିର କଲେ । ଦିନରେ ସେ ଯାଇ ରାଣୀଙ୍କ ପାଖରେ ପହଞ୍ଚିଲେ । ତାଙ୍କୁ ସମସ୍ତ କଥା ବୁଝାଇ କହିଲେ । ରମାଦେବୀଙ୍କର ସାହସ ଓ ଦେଶପ୍ରୀତି ଦେଖି ରାଣୀ କାଳାପାଣି ଯିବାପାଇଁ ରାଜି ହୋଇଗଲେ ।

ଠିକ୍ ଅଧରାତି । ସବୁଆଡ଼ ଶୂନଶାନ । ପହରାଦାର ପୋଲିସଙ୍କର ଧାରଣା ରାଣୀ ଯଦି ଯିବେ ତା'ହେଲେ ଦିନରେ ଯିବେ । ତେଣୁ ସେମାନେ ବେଶ୍ ସୁଖରେ ଶୋଇଯାଇଥାଆନ୍ତି ।

ଏହି ସମୟରେ ରାଣୀଙ୍କୁ ଧରି ରମାଦେବୀ ଯାଇ ଡଙ୍ଗାରେ ବସିଲେ । ଘନ ଅନ୍ଧକାର ରାତିରେ ମୁହଁକୁ ମୁହଁ ଦେଖାଯାଉ ନ ଥାଏ । ସେଥିପ୍ରତି ଖାତିର ନ କରି ରମାଦେବୀ ରାଣୀଙ୍କୁ ଧରି ଡଙ୍ଗାରେ ଆଗେଇ ଚାଲିଲେ । ଆଲୁଅ ଲଗାଇଲେ କାଳେ ଧରା ପଡ଼ିଯିବେ, ସେହି ଭୟରେ ସେ ଆଲୁଅ ମଧ୍ୟ ଲଗାଇଲେ ନାହିଁ । ରାତି ପାହି ଆସିଲା ବେଳକୁ

ରମାଦେବୀ ରାଣୀଙ୍କୁ ଧରି କାଳଆପାଟରେ ପହଞ୍ଚିଲେ । କାଳଆପାଟର ଲୋକମାନେ ରାଣୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ।

ରମାଦେବୀଙ୍କର ସାହସକୁ ଧନ୍ୟ ଧନ୍ୟ କଲେ । ରାଣୀଙ୍କ ଆଦେଶ ପାଇ ଲୋକମାନେ ଲୁଣମରାରେ ଲାଗି ପଡ଼ିଲେ ।

କାଳଆପାଟର ଲୁଣମରା କାମ ଆଗେଇ ଚାଲିଲା । ସାହସିନୀ ରମାଦେବୀଙ୍କ ଯୋଗୁଁ ଏ କାର୍ଯ୍ୟ ସଫଳ ହୋଇ-ଥିବାରୁ ସମସ୍ତେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ ।

## ହରିଜନଙ୍କ ସେବା କଲେ

ମହାତ୍ମାଗାନ୍ଧୀ ଅସ୍ପୃଶ୍ୟତା ଦୂର କରିବା ପାଇଁ ଆହ୍ୱାନ ଦେଲେ । ସାରା ଦେଶରେ ଏହା ଚହଳ ପକାଇଲା । ଛୁଆଁ-ଅଛୁଆଁ ଭେଦଭାବ ଉଠାଇବା ପାଇଁ ଦେଶସାରା ଆନ୍ଦୋଳନ ଚାଲିଲା ।

ସେତେବେଳକୁ ରମାଦେବୀ ହଜାରିବାଗ୍ ଜେଲରେ ଥାଆନ୍ତି । ଏ ଖବର ଶୁଣି ତାଙ୍କ ମନ ଚଞ୍ଚଳ ହୋଇ ଉଠିଲା । ଅସ୍ପୃଶ୍ୟତା ଦୂରୀକରଣ ପାଇଁ ମହାତ୍ମାଗାନ୍ଧୀଙ୍କ ଆମରଣ ଅନଶନ ତାଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲା ।

ରମାଦେବୀ ନିଜ ଶାଶୁଙ୍କୁ ଖୁସି କରିବା ପାଇଁ ଛୁଆଁ-ଅଛୁଆଁ ମାନି ଚଳିବେ ବୋଲି ଯେଉଁ ପ୍ରତିଶ୍ରୁତି ଦେଇଥିଲେ ତାହା କୁଆଡ଼େ ଉଭେଇ ଗଲା । ଛୁଆଁ-ଛୁଇଁ ବିଚାରକୁ ମାନି ସେ ଯେଉଁ ଅନ୍ୟାୟ କରିଛନ୍ତି ତାର ପ୍ରାୟଶ୍ଚିତ୍ତ ପାଇଁ ସେ ଜେଲ୍‌ରୁ ବାହାରିଲେ ଅସ୍ପୃଶ୍ୟତା ଦୂରୀକରଣ କାମରେ ଲାଗିବେ ବୋଲି ଶପଥ କଲେ ।

ରମାଦେବୀ ୭।୬ ମାସ ପରେ ହଜାରୀବାଗ୍ ଜେଲରୁ ମୁକ୍ତ ହେଲେ । ରମାଦେବୀ କଟକରେ ପହଞ୍ଚିଲାବେଳକୁ ଅସ୍ପୃଶ୍ୟତା ନିବାରଣ ସମିତି ଗଢ଼ା ସରିଥାଏ ।

ଛୁଆଁ-ଅଛୁଆଁ ଭେଦଭାବକୁ ଦୂରେଇବା ପାଇଁ ଶୋଭାଯାତ୍ରା, ମେହେନ୍ତର ପିଲାଙ୍କୁ ସଫାସୁତୁରା ରଖିବା, ପାଠ ପଢ଼ାଇବା, ଭଜନ ଶିଖାଇବା, ମଦ-ଗୋମାଂସ ନ ଖାଇବାକୁ ପ୍ରବର୍ତ୍ତାଇବା ପ୍ରଭୃତି କାର୍ଯ୍ୟ ଜୋରସୋରରେ ଆଗେଇ ଚାଲିଥାଏ ।

ରମାଦେବୀ ପହଞ୍ଚିଲା ପରେ ତାଙ୍କୁ ହରିଜନ ସେବକ ସଂଘର ଯୁଗ୍ମ ସମ୍ପାଦିକା ଦାୟିତ୍ୱ ଏବଂ ଅସ୍ପୃଶ୍ୟତା ନିବାରଣ ସମିତି ଓଡ଼ିଶା ଶାଖାର ସାମ୍ପାଦିକା ଦାୟିତ୍ୱ ମଧ୍ୟ ଦିଆଗଲା ।

ରମାଦେବୀଙ୍କ ତତ୍ତ୍ୱାବଧାନରେ ହରିଜନ ସେବାକାର୍ଯ୍ୟ ଆରମ୍ଭ ହେଲା । ରମାଦେବୀ କର୍ମୀମାନଙ୍କ ସହିତ ସାହି ସାହି ବୁଲି ହରିଜନମାନଙ୍କର ଘରଦ୍ୱାର ସଫାସୁତୁରା କଲେ । ମେହେନ୍ତରମାନଙ୍କର ଲୁଗାପଟା ସଫା କଲେ ।

ସେମାନଙ୍କୁ ସବୁବେଳେ ସଫାସୁତୁରା ରହିବା ପାଇଁ ବୁଝାଇଲେ । ସେମାନଙ୍କର ପିଲାମାନଙ୍କୁ ସଫାସୁତୁରା କରି ତା'ର ଉପକାରିତା ବିଷୟରେ ଉପଦେଶ ଦେଲେ ।

ସେମାନଙ୍କ ସହିତ ମିଶି ପାଇଖାନା ମଧ୍ୟ ସଫା କଲେ । ସମସ୍ତଙ୍କୁ ଆପଣାର କରିନେଇ ସେ ତାଙ୍କର କାମକୁ ଆଗେଇ ନେଉଥାନ୍ତି ।

ରମାଦେବୀଙ୍କ ଉଦ୍ୟମ ଫଳରେ ଅନେକ ହରିଜନ ମଦ ଓ ଗୋମାଂସ ଖାଇବା ଛାଡ଼ିଦେଲେ । ପରିଷ୍କାର

ପରିଚ୍ଛନ୍ନ ପାଇଁ ଯତ୍ନବାନ ହେଲେ । ନିଜର ପିଲାମାନଙ୍କୁ ସଫାସୁତୁରା ରଖିଲେ । ସେମାନଙ୍କୁ ପାଠ ପଢ଼ାଇବା ପାଇଁ ପଠାଇଲେ । ଅନ୍ୟମାନଙ୍କ ସହିତ ସାମିଲ ହେବାପାଇଁ ଚେଷ୍ଟା କଲେ ।

ଲୋକଙ୍କ ମନରୁ ଅନ୍ଧବିଶ୍ୱାସ ଓ କୁ-ସଂସ୍କାର ଦୂର କରିବା ପାଇଁ ରମାଦେବୀ ଦିନରାତି ଅକ୍ଳାନ୍ତ ପରିଶ୍ରମ କରିବାକୁ ଲାଗିଲେ । ତାଙ୍କର ପରିଶ୍ରମ ଧୀରେ ଧୀରେ ଫଳବତୀ ହେବାକୁ ଲାଗିଲା ।



## ବାରିକୁ ନିଜର କର୍ମକ୍ଷେତ୍ର କଲେ

ଗାନ୍ଧିଜୀ ହରିଜନ ପଦଯାତ୍ରା ଆରମ୍ଭ କଲେ । ତାଙ୍କ ସହିତ ରମାଦେବୀ ଯୋଗଦେଇ ପଦଯାତ୍ରା କଲେ । ଗାନ୍ଧିଜୀଙ୍କ ସହିତ ବୁଲି ହରିଜନମାନଙ୍କର ସେବା କଲେ ରମାଦେବୀ ।

ସେହି ସମୟରେ ଗାନ୍ଧିଜୀ ରମାଦେବୀଙ୍କୁ କହିଲେ— 'ଗ୍ରାମକୁ ଫେରିଯାଅ । ସେଠାରେ ତୁମକୁ ବିଭିନ୍ନ ଗଠନମୂଳକ କାମ କରିବାକୁ ପଡ଼ିବ ।

ରମାଦେବୀ ତ ସମାଜସେବା କରିବା ପାଇଁ ଶପଥ ନେଇଛନ୍ତି ତେଣୁ ଗାନ୍ଧିଜୀଙ୍କ କଥା ଶୁଣି ସେ ସଙ୍ଗେ ସଙ୍ଗେ ମାନିନେଲେ ।

ତା'ପରେ ରମାଦେବୀ ନିଜର ସ୍ୱାମୀ ଗୋପବନ୍ଧୁ ଚୌଧୁରୀଙ୍କ ସହ ବରୀ ଯିବାପାଇଁ ସ୍ଥିର କଲେ ।

ରମାଦେବୀ ନିଜର କର୍ମକ୍ଷେତ୍ର ରୂପେ ବରୀକୁ ବାଛିବାର ସବୁଠାରୁ ବଡ଼ କାରଣ ହେଉଛି ସେ ଅଞ୍ଚଳଟି ଖରସ୍ରୋତା, ବ୍ରାହ୍ମଣୀ ଓ ବିରୂପା ନଦୀର ମୁହାଣରେ ଅବସ୍ଥିତ ।

ତେଣୁ ସବୁ ବର୍ଷ ସେଠାରେ ନଦୀ ବଢ଼ି ହୁଏ । ଯାହା-ଫଳରେ ବହୁ ଧନ-ଜୀବନ ନଷ୍ଟ ହୁଏ । ଚାରିଆଡ଼ ହାହାକାର ପଡ଼ିଯାଏ । ଲୋମାନେ ନ ଖାଇ ନ ପିଇ ପାଣି କାଦୁଅରେ ଗଛମୂଳେ, ମୁକ୍ତ ଆକାଶତଳେ ଦିନରାତି କଟାନ୍ତି ।

ସେହି ଦାରୁଣ ଦୃଶ୍ୟଗୁଡ଼ିକ ରମାଦେବୀଙ୍କ ଆଖି ଆଗରେ ନାଚି ଉଠିଲା । ସେହିମାନଙ୍କର ସେବା କରିବା ପାଇଁ ସେ ବରୀକୁ ନିଜର କର୍ମକ୍ଷେତ୍ର ରୂପେ ବାଛିନେଲେ ।

ବରୀରେ ଗୋପବନ୍ଧୁ ଚୌଧୁରୀ ଏବଂ ରମାଦେବୀ ଯାଇ ପହଞ୍ଚିଲେ । ସେମାନେ ଗୋଟିଏ ଆଶ୍ରମ ତିଆରି କରି ରହିଲେ । ନିଜ ହାତରେ ଝାଟିମାଟି ନେଇ ରମାଦେବୀ ନିଜେ ଘର ତିଆରି କଲେ । ଗ୍ରାମର ମୂଲିଆ, ମୂଲିଆଣୀଙ୍କ ସହିତ ଯାଇ ବିଲକାମ କଲେ । ଧାନକଟା ସମୟରେ ନିଜେ ଧାନ କାଟିଲେ । ଧାନକୁ ବିଡ଼ା ବାନ୍ଧି ମୁଣ୍ଡରେ ବୋହି ଆଣିଲେ । କାମହିଁ ତାଙ୍କ ଜୀବନର ସର୍ବସ୍ୱ ।

ତେଣୁ ଏତେବଡ଼ ଘରର ଝିଅ ଆଉ ବୋହୂ ହୋଇ ମଧ୍ଯ ସେ ନିଜକୁ ଏକ ନିପଟ ମଫସଲର ସାଧାରଣ ନାରୀ ସହିତ ସାମିଲ କରି ପାରୁଥିଲେ ।

ରମାଦେବୀ ଯେଉଁ ଆଶ୍ରମରେ ରହୁଥିଲେ ତାହା ଗାନ୍ଧିଜୀଙ୍କ ଇଚ୍ଛାନୁସାରେ "ସେବାଘର" ନାମରେ ନାମିତ କରାଗଲା । ଗୋପବନ୍ଧୁ ଚୌଧୁରୀଙ୍କ ଅଦମ୍ୟ ନିଷ୍ଠା ଓ ରମାଦେବୀଙ୍କ ଅକୁଣ୍ଠ ସ୍ନେହ ତଥା କର୍ମ ପ୍ରେରଣାର ଫଳରେ ସେବା ଘରଟି ଏକ ଆଦର୍ଶ ସେବାଶ୍ରମରେ ପରିଣତ ହେଲା ।

ମାଟି ସହିତ ମାଟି ହୋଇ ଆଗେଇ ଯିବାକୁ ରମା-ଦେବୀ ମହିଳାମାନଙ୍କୁ ଉତ୍ସାହିତ କରାଇଲେ । ଗାନ୍ଧିଜୀଙ୍କ କାର୍ଯ୍ୟକୁ ସେ ଆଗେଇ ନେଲେ । କପାଚାଷ, ସୂତାକଟା, ଲୁଗାବୁଣା, ହରିଜନ ସେବା, ରାଷ୍ଟ୍ରଭାଷା ପ୍ରଚାର ସେବାଶ୍ରମର ମୂଳକାର୍ଯ୍ୟ ହେଲା ।

ରମାଦେବୀଙ୍କ ତତ୍ତ୍ୱାବଧାନରେ ଏହା ଏପରି ଭାବରେ କାର୍ଯ୍ୟ କଲା ଯେ ବରୀ ସେବାଶ୍ରମ ଓଡ଼ିଶାର ସବୁଠାରୁ ଶ୍ରେଷ୍ଠ ସ୍ଥାନରେ ରହିଲା ।

## ଭୂଦାନ କର୍ମୀ ରମାଦେବୀ

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଆମ ଦେଶ ସ୍ୱାଧୀନ ହେଲା । ଇଂରେଜମାନେ ଆମ ଦେଶ ଛାଡ଼ି ଚାଲି-ଗଲେ । ସେତେବେଳେ ଗରିବମାନଙ୍କ କୌଣସି ଉନ୍ନତି ହୋଇପାରି ନଥିଲା । ବିଭିନ୍ନପ୍ରକାର ସାମାଜିକ କଳଙ୍କରେ ଦେଶ ବୁଡ଼ି ରହିଥିଲା ।

ସେହି ସମୟରେ ବିନୋବାଜୀ ଭୂଦାନ ଓ ଗ୍ରାମଦାନ ଡାକରା ଦେଲେ । ତାଙ୍କ ଡାକରା ଶୁଣି ସେହି ମହାନ ସେବା ସଂସ୍ଥାରେ ରମାଦେବୀ ଯୋଗ ଦେଲେ ।

ଅଖିଳ ଭାରତ ସର୍ବସେବା ସଂଘର ବୈଠକ ପୁରୀରେ ଆୟୋଜନ କରାଗଲା । ସେହି ସମ୍ମିଳନୀରେ ହଜାର ହଜାର ଲୋକ ଯୋଗ ଦେଲେ । ତା'ପରେ ସର୍ବୋଦୟ ସମ୍ମିଳନୀ ଆରମ୍ଭ ହେଲା ।

ଏହି ସମ୍ମିଳନୀରେ ରମାଦେବୀ ନିଜର ସହକର୍ମୀମାନଙ୍କ ସହିତ ଦିନରାତି ମିଶି ଖାଇବା ପିଇବାର ଭଲମନ୍ଦ ବୁଝାବୁଝି କରିଲେ । ତାଙ୍କର ଏହି କାର୍ଯ୍ୟ ଏପରି ଭାବରେ ହୋଇଥିଲା ଯେ କୌଣସି ଲୋକର କିଛି ଅସୁବିଧା ହୋଇ ନ ଥିଲା । ସମସ୍ତେ ରମାଦେବୀଙ୍କର କାର୍ଯ୍ୟକଳାପ ଦେଖି ପ୍ରଶଂସା କଲେ ।

୧୯୫୫ ମସିହାରେ ଯେତେବେଳେ ବିନୋବାଜୀ ଓଡ଼ିଶା ଆସିଲେ, ରମାଦେବୀ ତାଙ୍କ ସହିତ ପଦଯାତ୍ରାରେ ଯୋଗ ଦେଲେ ।

ରମାଦେବୀ ବାଟରେ ଭାଗବତ ପାଠ କରୁଥିଲେ ଓ ଅଧିକାଂଶ ସମୟରେ ସେ ବିନୋବାଜୀଙ୍କ ପାଖେ ପାଖେ ରହୁଥିଲେ । ରମାଦେବୀଙ୍କର ସେବା ଓ କର୍ମତତ୍ପରତା ଦେଖି ବିନୋବାଜୀ ତାଙ୍କୁ ଭୂମିବଣ୍ଟନ ଦାୟିତ୍ୱ ଦେଇଥିଲେ ।

ରମାଦେବୀ ଆସାମରେ ହୋଇଥିବା ସର୍ବୋଦୟ ସମ୍ମିଳନୀରେ ଯୋଗ ଦେଇଥିଲେ । ମହାରାଷ୍ଟ୍ରର ପଣ୍ଢରପୁର ସର୍ବୋଦୟ ସମ୍ମିଳନୀରେ ରମାଦେବୀ ସଭାନେତ୍ରୀ ହୋଇ-

ଥିଲେ । ଶାନ୍ତସେନାର ଦାୟିତ୍ୱ ମଧ୍ୟ ରମାଦେବୀ ହାତକୁ ଦେଇଥିଲେ ।

ସେଠାରୁ ଫେରି ରମାଦେବୀ କଟକ ଜିଲ୍ଲାର ହରିଦାସ-ପୁରରେ ଏକ ସେବା ସମିତି ଗଠନ କଲେ । ସେବାସମିତି ମାଧ୍ୟମରେ ଗାଁରେ କଳିକଜିଆର ସମାଧାନ କରିବା ସଙ୍ଗେ ସଙ୍ଗେ ସମାଜସେବା କରିବାରେ ଲାଗିପଡ଼ିଲେ ।



## ରମାଦେବୀଙ୍କ ସ୍ୱାମୀ ବିୟୋଗ

ରମାଦେବୀଙ୍କ ଦେହ ଏପରି ଭାବରେ ଅସୁସ୍ଥ ହୋଇ-ପଡ଼ିଲା ଯେ, ସମସ୍ତେ ଭାବିଲେ ସେ ଆଉ ବଞ୍ଚିବେ ନାହିଁ ।

ଡାକ୍ତର ଶରତ ମିଶ୍ର ରମାଦେବୀଙ୍କର ଚିକିତ୍ସା କରୁ-ଥିଲେ । ତାଙ୍କର ସେବା ଓ ଚିକିତ୍ସାରେ କେହି ଅବହେଳା କରୁ ନ ଥିଲେ । ଦିନରାତି ତାଙ୍କ ସେବାରେ ଲାଗି ରହି-ଥାଆନ୍ତି ।

ରମାଦେବୀଙ୍କ ଦେହ ଭୀଷଣ ଭାବରେ ଅସୁସ୍ଥ ହେବା ଶୁଣି ଗୋପବନ୍ଧୁ ଚୌଧୁରୀ ଆସି କଟକରେ ପହଞ୍ଚିଲେ ।

ସ୍ତ୍ରୀଙ୍କର ଦେହ ଅସୁସ୍ଥ ଦେଖି ସେ ଟିକିଏ ବିଚଳିତ ହୋଇ ଉଠିଲେ ।

ଗୋପବନ୍ଧୁ ଚୌଧୁରୀ ଭୁବନେଶ୍ୱର ଜଜ୍ ସାଧୁ ବାବୁଙ୍କ ଘରକୁ ଗଲେ । ସେଠାରେ ସେ ତାଙ୍କଠାରୁ ତତ୍-କାଳୀନ ମନ୍ତ୍ରୀମଣ୍ଡଳର ଅପାରଗତା ବିଷୟରେ ଶୁଣିଲେ । ସେ ତାହା ଶୁଣି ବିବ୍ରତ ହୋଇ ଉଠିଲେ । ମନ୍ତ୍ରୀମଣ୍ଡଳର କାର୍ଯ୍ୟକଳାପ ତାଙ୍କୁ ବହୁତ ବାଧିଲା । ସେ ଆଉ ସେଠାରେ ନ ରହି କଟକ ଫେରି ଆସିଲେ ।

କଟକ ଫେରିଆସାବି ଆଶ୍ରମର ବାରଣ୍ଡାରେ ଅନ୍ୟ-ମନସ୍କ ଭାବରେ ବୁଲିବାକୁ ଲାଗିଲେ । ମନ ତାଙ୍କର କିଛି ଭଲ ରହିଲା ନାହିଁ । ତାଙ୍କ ଆଖି ଆଗରେ ଖାଲି ସେମାନଙ୍କର କାର୍ଯ୍ୟକଳାପ ନାଚି ଉଠିଲା ।

ସେ ଆଚାର୍ଯ୍ୟ ମହାଶୟଙ୍କୁ ଡାକି କହିଲେ—"ଆମେ କ'ଣ ଏତେ କଷ୍ଟକରି ସ୍ୱାଧୀନତା ଆଣିଥିଲେ ଏଇ ଅପଦାର୍ଥ-ଗୁଡ଼ାଙ୍କ ପାଇଁ । ଶେଷରେ ଏମାନେ ମଦର ଆଶ୍ରୟ ନେଲେ ।

ସେଦିନ ଥାଏ ୧୯୫୮ ମସିହା ଏପ୍ରିଲ ମାସ ୨୯ ତାରିଖ । ଗୋପବନ୍ଧୁ ଚୌଧୁରୀ ରାତିରେ ଭୀଷଣ ଯନ୍ତ୍ରଣାରେ ଛଟପଟ ହେବାକୁ ଲାଗିଲେ । ତାଙ୍କ ଦେହରେ ଏପରି ଯନ୍ତ୍ରଣା ହେଲା ଯେ, ଶେଷରେ ତାଙ୍କୁ ନେଇ ଗୋଟିଏ ପାଣି କୁଣ୍ଡରେ ବସାଇ ଦେଲେ ।

କିନ୍ତୁ ତାଙ୍କର ଯନ୍ତ୍ରଣା ଉପଶମ ହେଲା ନାହିଁ । ସେ ସେ ସେହିପରି ଯନ୍ତ୍ରଣାରେ ଛଟ ପଟ ହେଉଥାଆନ୍ତି । ସେହି ଚିତ୍କାର ମଧ୍ୟରେ ତାଙ୍କ ମୁହଁରୁ ବାହାରି ଆସିଲା—ଓଃ !

ମୁଁ କ'ଣ ଦେଖୁଛି । କି ସୁନ୍ଦର ଆଲୋକ । ଦୟାମୟୀ; ପୁଣ୍ୟମୟୀ, ଆସିଛ ଯେତେବେଳେ ମୋତେ କୋଳକୁ ନେଇଯାଅ । ବଡ଼ କଷ୍ଟ ହେଉଛି । କରୁଣାମୟୀ; ତୁମର ଇଚ୍ଛା ପୂର୍ଣ୍ଣ ହେଉ ।

ଏହା କହିବା ସଙ୍ଗେ ସଙ୍ଗେ ଶେଷଥର ପାଇଁ ତାଙ୍କ ମୁହଁରୁ ବାହାରି ଆସିଲା—"ଜୟଗୁରୁ ।" ତାପରେ ସବୁ ଶେଷ । ଗୋପବନ୍ଧୁ ଚୌଧୁରୀ ସମସ୍ତଙ୍କୁ ଏକାକରି ରାତି ୧୧ଟା ୭ ମିନଟ୍‌ରେ ଏ ଧରାଧାମରୁ ବିଦାୟ ନେଇ ଚାଲି ଗଲେ ।

ରମାଦେବୀ ରୋଗ ଶଯ୍ୟାରେ ଥାଇ ଏ ମର୍ମନ୍ତୁଦ କଥା ଶୁଣି ଭାଙ୍ଗି ପଡ଼ିଲେ । ତାଙ୍କର ମାନସିକ ଭାରସାମ୍ୟ ଦୋହଲି ଉଠିଲା । ସେ ନିଜକୁ ଏକ ନିଃସଙ୍ଗ ବିହଙ୍ଗ ପରି ମନେକଲେ ।

## କେବଳ ସେବା ଆଉ ସେବା

୧୯୬୪ ମସିହାରେ ରାଉରକେଲାରେ ଓ ସୁନ୍ଦରଗଡ଼ ଜିଲ୍ଲାରେ ସାମାନ୍ୟ କାରଣରୁ ସାମ୍ପ୍ରଦାୟିକ ସଂଘର୍ଷ ଆରମ୍ଭ ହୋଇଗଲା । ହିନ୍ଦୁ-ମୁସଲମାନ ମଧ୍ୟରେ ଲାଗିଗଲା ଭୟାନକ ଭାବରେ ସଂଗ୍ରାମ । ଏହାର ମୁକାବିଲା କରି ଶାନ୍ତବାତାବରଣ ଫେରାଇ ଆଣିବା ପାଇଁ ସର୍ବସେବା ସଂଘର ଆହ୍ୱାନ ପାଇ ରମାଦେବୀ ବାହାରି ପଡ଼ିଲେ ସେ ଅଞ୍ଚଳକୁ ।

ଗାଁ ଗାଁ ସାହି ସାହି ବୁଲି ରମାଦେବୀ ଓ ତାଙ୍କର ଯାଆ ମାଲତୀ ଦେବୀ ଲୋକମାନଙ୍କୁ ବୁଝାଇଲେ । ଅକ୍ଳାନ୍ତ ପରିଶ୍ରମ କରି ରମାଦେବୀ ସାମ୍ପ୍ରଦାୟିକ ଗଣ୍ଡଗୋଳକୁ ଶାନ୍ତ କରିଲେ ।

୧୯୭୪ ମସିହାରେ ମୌସୁମୀବାୟୁ ପ୍ରଭାବରେ କଳାହାଣ୍ଡି, କୋରାପୁଟ, ବଲାଙ୍ଗିର, ସୁନ୍ଦରଗଡ଼, ଢେଙ୍କାନାଳ ସମ୍ବଲପୁର ଓ ଫୁଲବାଣୀ ଜିଲ୍ଲାରେ ବ୍ୟାପକ ଫସଲ ହାନି ଘଟିଲା । କଳାହାଣ୍ଡି, ସମ୍ବଲପୁର, ବଲାଙ୍ଗିରର ବିଭିନ୍ନ ଗାଁରେ ମରୁଡ଼ି ଦେଖାଗଲା ।

ଲୋକମାନେ ଅନାହାରରେ ମରିବାକୁ ଲାଗିଲେ । ଏ ଖବର ପାଇ ନବଜୀବନ ମଣ୍ଡଳର କର୍ମୀମାନେ ରମାଦେବୀ ଓ ଅନ୍ନପୂର୍ଣ୍ଣା ମହାରଣାଙ୍କୁ ତା'ର ସତ୍ୟାସତ୍ୟ ଜାଣିବା ପାଇଁ ପଠାଇଲେ ।

ରମାଦେବୀ ସେଠାରେ ପହଞ୍ଚି ଦେଖିଲେ ଯେ ଅବସ୍ଥା ଅତି ଖରାପ । ଯେ ପର୍ଯ୍ୟନ୍ତ ସେଠାରେ କୌଣସି ରିଲିଫ୍ ଦେବାର ବ୍ୟବସ୍ଥା ହୋଇନାହିଁ ସେ ସମସ୍ତ ମରୁଡ଼ି ଅଞ୍ଚଳ ଗସ୍ତ କରି କଟକ ଫେରିଲେ ।

ମରୁଡ଼ି ଅଞ୍ଚଳର ପ୍ରତିକାର ପାଇଁ ରମାଦେବୀ କଟକ ଜିଲ୍ଲାରୁ ଭୂଦାନ ଅଫିସଠାରେ ଏକ ସଭାର ଆୟୋଜନ କଲେ । ଉକ୍ତ ସଭାରେ ସେ ନିଜେ ଅଧ୍ୟକ୍ଷତା କଲେ । ଏ ସଭାରେ ବିଭିନ୍ନ ସ୍ୱେଚ୍ଛାସେବୀ ଅନୁଷ୍ଠାନ, ବିଶିଷ୍ଟ ବ୍ୟକ୍ତି-ମାନେ ଯୋଗ ଦେଇଥିଲେ ।

ସଭାରେ ବେସରକାରୀ ରିଲିଫ୍ ସଂସ୍ଥା ଗଠନ ପାଇଁ ଗୋଟିଏ ପ୍ରସ୍ତାବ ଗୃହୀତ ହେଲା । "ଓଡ଼ିଶା ତ୍ରାଣ ରିଲିଫ୍ କମିଟି" ନାମରେ ସଂସ୍ଥାଟିକୁ ନାମିତ କଲେ । ତାପରେ ସେ ସଂସ୍ଥାର କର୍ମୀମାନଙ୍କୁ ନେଇ ମରୁଡ଼ି ଅଞ୍ଚଳକୁ ବାହାରି ପଡ଼ିଲେ ।

ଲୋକମାନଙ୍କୁ ଖାଇବା ପିଇବାକୁ ଦେବା ସଙ୍ଗେ ସଙ୍ଗେ ସେମାନଙ୍କର ସେବାରେ ସମସ୍ତେ ଲାଗି ପଡ଼ିଲେ । ସମସ୍ତ କାର୍ଯ୍ୟ କପରି ସୁଚାରୁରୂପେ ହେବ ତା'ର ଖବର ନିଜେ ରମାଦେବୀ ବୁଝୁଥିଲେ ।

ମରୁଡ଼ି ଅଞ୍ଚଳରେ ରମାଦେବୀ ଓ ତାଙ୍କର କର୍ମୀମାନେ ଅନେକ ଅସୁବିଧାରେ ପଡ଼ିଲେ ମଧ୍ୟ ସେଥିପ୍ରତି ଭ୍ରୂକ୍ଷେପ ନ କରି ତାଙ୍କର କାମରେ ଲାଗିପଡ଼ି ଥାଆନ୍ତି ।

ସେମାନେ ପ୍ରାୟ ପାଞ୍ଚମାସ ପର୍ଯ୍ୟନ୍ତ ରିଲିଫ କାର୍ଯ୍ୟରେ ଲାଗି ରହିଲେ । କେବଳ ସେବା ଆଉ ସେବାରେ ରମାଦେବୀ ନିଜକୁ ବୁଡ଼ାଇ ରଖିଲେ ।



## ଶରଣାର୍ଥୀଙ୍କ ସେବା କଲେ

୧୯୭୧ ମସିହା କଥା । ପଶ୍ଚିମ ପାକିସ୍ଥାନ ଓ ପୂର୍ବ-ପାକିସ୍ଥାନ (ବଙ୍ଗଳା ଦେଶ) ମଧ୍ୟରେ ସଂଘର୍ଷ ଲାଗିଲା । ଏ ସଂଘର୍ଷ ଏପରି ଭୟାନକ ରୂପ ନେଲା ଯେ ବଙ୍ଗଳା ଦେଶର

ଅନେକ କ୍ଷୟକ୍ଷତି ହେଲା । ବଙ୍ଗଳା ଦେଶର ବହୁ ଶରଣାର୍ଥୀ ଭାରତକୁ ପଳାଇ ଆସିଲେ । ଭାରତ ପକ୍ଷରୁ ସେସବୁ ଅଞ୍ଚଳରେ ସେବାକାର୍ଯ୍ୟ ଆରମ୍ଭ ହେଲା ।

ରମାଦେବୀ ଯେ କେବଳ ଓଡ଼ିଶାବାସୀଙ୍କ ପାଇଁ ଚିନ୍ତା କରୁଥିଲେ ତା' ନୁହେଁ । ସେ ସମଗ୍ର ମାନବ ଜାତି ପାଇଁ ଚିନ୍ତା କରୁଥିଲେ ।

ଯେଉଁଠି ଯେତେଦୂର ହେଉ ସେ ଖବର ପାଇଲା-ମାତ୍ରେ ସେଠାରେ ଯାଇ ପହଞ୍ଚି ଯାଉଥିଲେ । ବଙ୍ଗଳା ଦେଶ ଉପରେ ହେଉଥିବା ଲୋମହର୍ଷଣ ଅତ୍ୟାଚାର କଥା ମା' ରମାଦେବୀ ଶୁଣିବାକୁ ପାଇଲେ । ସେ ଆଉ ସ୍ଥିର ହୋଇ ରହି ପାରିଲେ ନାହିଁ ।

ସେ ଉତ୍କଳ ଗାନ୍ଧୀ ସ୍ମାରକନିଧି କର୍ମୀମାନଙ୍କୁ ସଙ୍ଗରେ ଧରି ସେଠାରେ ଯାଇ ପହଞ୍ଚିଲେ । କର୍ମୀମାନଙ୍କ ସହ ରମା-ଦେବୀ ରିଲିଫ୍ କାମରେ ଲାଗି ପଡ଼ିଲେ ।

ରମାଦେବୀ ଥିଲେ ରନ୍ଧନ ନିପୁଣା । ସେ ତାଙ୍କ ମା' ବସନ୍ତକୁମାରୀଙ୍କଠାରୁ ବିଭିନ୍ନ ପ୍ରକାରର ରନ୍ଧନ କାମ ଶିଖି-ଥିଲେ । ଶରଣାର୍ଥୀମାନଙ୍କର ସେବାକାର୍ଯ୍ୟ ସମୟରେ ରମା-ଦେବୀ ନିଜେ ରୋଷେଇ କାର୍ଯ୍ୟ କରୁଥିଲେ ଓ ତାର ଠିକ-ଣିଖି ଖବର ରଖୁଥିଲେ । ଶରଣାର୍ଥୀଙ୍କ ସେବାରେ ସେ ଦୀର୍ଘଦିନ ପର୍ଯ୍ୟନ୍ତ ରହି କାର୍ଯ୍ୟ କଲେ ।

## ରମାଦେବୀ ପୁରସ୍କାର ଓ ସମ୍ମାନ ପାଇଲେ

୧୯୮୧ ମସିହା ନଭେମ୍ବର ମାସ ୪ ତାରିଖରେ ମହିଳା ଓ ଶିଶୁମାନଙ୍କର ଉନ୍ନତି ପାଇଁ "ଯମୁନାଲାଲ ବଜାଜ

ଫାଉଣ୍ଡେସନ୍'' ତରଫରୁ ବଜାଜ ପୁରସ୍କାର ସ୍ୱରୂପ ଏକଲକ୍ଷ ଟଙ୍କା ରମାଦେବୀ ପାଇଲେ । ତାଙ୍କୁ ମିଳିଥିବା ଏହି ଏକଲକ୍ଷ ଟଙ୍କାକୁ ସେ ଅସହାୟା ମହିଳା ଓ ଶିଶୁମାନଙ୍କ ପାଇଁ ଦାନ କରିଦେଲେ । ଏଥିପାଇଁ ଏକ ଟ୍ରଷ୍ଟ ଗଠନ କରାଗଲା । ସେ ଟ୍ରଷ୍ଟିଟିର ନାମ 'ରମାଦେବୀ-ଗୋପବନ୍ଧୁ ଚୌଧୁରୀ ନିଧି ।'

ରମାଦେବୀଙ୍କର ସେବା ଓ କାର୍ଯ୍ୟ ପାଇଁ ଉତ୍କଳ ବିଶ୍ୱବିଦ୍ୟାଳୟ ତାଙ୍କୁ ସମ୍ମାନସୂଚକ ଡକ୍‌ଟରେଟ ଡିଗ୍ରୀ ୧୯୮୪ ମସିହା ଏପ୍ରିଲ ୧୭ ତାରିଖ ଦିନ ପ୍ରଦାନ କଲେ ।

ରମାଦେବୀ କୌଣସି ସ୍କୁଲ କିମ୍ବା କଲେଜରେ ପାଠ ନ ପଢ଼ି ମଧ୍ୟ ସେ ଭାରତର ସମ୍ମାନସୂଚକ ପୁରସ୍କାର 'ବାଜଜ୍ ପୁରସ୍କାର ଓ ଉତ୍କଳ ବିଶ୍ୱବିଦ୍ୟାଳୟର ଡକ୍‌ଟରେଟ ଉପାଧି ପାଇ ପାରିଲେ । ଏହି ସମ୍ମାନ ପାଇବାରେ ରମାଦେବୀ ହେଉଛନ୍ତି ଓଡ଼ିଶାର ପ୍ରଥମ ମହିଳା ।

## ରମାଦେବୀ ଚାଲିଗଲେ

ରମାଦେବୀଙ୍କ ଦେହ ଅସୁସ୍ଥ ହୋଇ ପଡ଼ିଲା । ସେ ରୋଗ ଶଯ୍ୟାରେ ପଡ଼ି ରହିଲେ । ଏ କଥା ଖବର କାଗଜରେ ପ୍ରକାଶ ପାଇଲା । ମହୀୟସୀ ରମାଦେବୀଙ୍କ ଆରୋଗ୍ୟ ପାଇଁ ସମସ୍ତେ ବ୍ୟାକୁଳ ହୋଇ ଉଠିଲେ ।

ଡାକ୍ତରମାନେ ତାଙ୍କ ଚିକିତ୍ସାରେ ଲାଗିଥାଆନ୍ତି । ଓଡ଼ିଶାର ସମସ୍ତ ଲୋକଙ୍କ ମୁହଁରେ ଗୋଟିଏ କଥା 'ହେ ଭଗବାନ, ମା' ରମାଦେବୀଙ୍କୁ ଶୀଘ୍ର ଭଲ କରିଦିଅ ।'

ନିୟତିର କ୍ରୂର ପରିହାସରେ ସେ ସମସ୍ତଙ୍କ କଥାକୁ ଏଡ଼ାଇ ଦେଇ ୧୯୮୫ ମସିହା ଜୁଲାଇ ମାସ ୨୨ ତାରିଖ

ରାତି ୨ଟା ବେଳେ ତାଙ୍କୁ ଆରପୁରକୁ ନେଇଗଲା । ସମସ୍ତଙ୍କର ଆଦରର ମହୀୟସୀ ମାଆ ରମାଦେବୀ ସମସ୍ତଙ୍କୁ ଏକା କରି ସେପାରିକୁ ଚାଲିଗଲେ ।

## ରମାଦେବୀଙ୍କୁ ରାଷ୍ଟ୍ରୀୟ ସମ୍ମାନ ଦିଆଗଲା

୧୯୮୫ ମସିହା ଜୁଲାଇ ୨୨ ତାରିଖ ଦିନ ସକାଳେ ରେଡ଼ିଓରେ ପ୍ରଚାର ହୋଇଗଲା—'ମା ରମାଦେବୀ ଆଉ ନାହାନ୍ତି । ଏ ଖବର ଶୁଣି ଶହ ଶହ ଲୋକ ଯାଇ କାଠଯୋଡ଼ି କୂଳରେ ଥିବା କୋଠାଘର ସମ୍ମୁଖରେ ରୁଣ୍ଡ ହୋଇଗଲେ । ମା' ରମାଦେବୀଙ୍କୁ ଶେଷ ଦର୍ଶନ କରିବା ପାଇଁ ଆକୁଳ ନୟନରେ ଚାହିଁ ରହିଲେ ।

ରମାଦେବୀ ତାଙ୍କ ଜୀବନକାଳ ମଧ୍ୟରେ ଶାସନର କୌଣସି ଆସନରେ ଅଧିଷ୍ଠିତ ହୋଇ ନାହାନ୍ତି । କିନ୍ତୁ ତାଙ୍କର ମହାନ୍ ତ୍ୟାଗପୂତ ଜୀବନ ପାଇଁ ତତ୍କାଳୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଘୋଷଣା କଲେ ଯେ, ରମାଦେବୀଙ୍କୁ ରାଷ୍ଟ୍ରୀୟ ସମ୍ମାନ ଦିଆଯିବ । ରମାଦେବୀ ବିଧାନସଭାର ସଭ୍ୟ ନ ଥାଇ ମଧ୍ୟ ବିଧାନସଭାରେ ଶୋକପ୍ରସ୍ତାବ କରି ମୁଲତବୀ ରଖାଗଲା । ୨୨ ତାରିଖ ଦିନଟିକୁ ସରକାରୀ ଛୁଟିଦିବସ ରୂପେ ଘୋଷଣା କରାଗଲା ।

ତିନିଦିନ ପର୍ଯ୍ୟନ୍ତ ରାଜ୍ୟରେ ଶୋକଦିବସ ପାଳନ କରାଯିବ ଓ ଜାତୀୟ ପତାକା ଅର୍ଦ୍ଧନମିତ ରହିବ ବୋଲି ଘୋଷଣା ହେଲା । ଓଡ଼ିଶାର ସର୍ବୋଚ୍ଚ ନ୍ୟାୟାଳୟ ହାଇ-କୋର୍ଟ ମୁଲତବୀ ରହିଲା ।

ରାଷ୍ଟ୍ରୀୟ ସମ୍ମାନ ଦେବାକୁ ହେଲେ ପୋଲିସ୍ ଗାଡ଼ିରେ ଶବ ଯିବା କଥା କିନ୍ତୁ ଲୋକମାନଙ୍କର ଜିଦ୍ ସେମାନେ ମା' ରମାଦେବୀଙ୍କ ଶବକୁ କାନ୍ଧରେ ବୋହିନେବେ ।

ଶେଷରେ ତାହାହିଁ ହେଲା । ଲୋକମାନେ ମା' ରମା-ଦେବୀଙ୍କ ଶବକୁ କାନ୍ଧରେ ବୋହି ବାହାରିଲେ । ସେତେ-ବେଳକୁ ଦିନ ପ୍ରାୟ ବାରଟା । ହଜାର ହଜାର ଲୋକ ଶବ ଯାତ୍ରାରେ ଯାଉଥାଆନ୍ତି । ପୋଲିସ୍ ରାସ୍ତାର ଦୁଇ କଡ଼ରେ



ଚାଲି ଥାଆନ୍ତି । ଏହି ବିରାଟ ଶବ ଶୋଭାଯାତ୍ରାଟି ବାଖରା-ବାଦସ୍ଥ ବାସଭବନରୁ ବାହାରି ସନ୍‌ସାଇନ୍ ପଡ଼ିଆ ପାଖ ଦେଇ ଟାଉନ୍‌ହଲ ରୋଡ଼, ଚୌଧୁରୀ ବଜାର, ଦରଘା ବଜାର, ବକ୍ସିବଜାର ଦେଇ ଥୋରିଆସାହିର ଗୁଣନିଧି ଭବନକୁ ନିଆଗଲା । ତା'ପରେ ସେଠାରୁ ଖାନ୍‌ନଗର ମଶାଣିକୁ ।

ରମାଦେବୀଙ୍କର ମରଶରୀର ଶୋଭାଯାତ୍ରାରେ ଓଡ଼ିଶାର ତତ୍କାଳୀନ ରାଜ୍ୟପାଳ ବିଶ୍ୱମ୍ଭର ନାଥ ପାଣ୍ଡେ, ଶ୍ରୀମତୀ,

ପାଣ୍ଡେ, ଡଃ କାଳନ୍ଦୀ ପାଣିଗ୍ରାହୀ, ପୋଲିସ ଡି. ଜି. ବି. କେ. ପାଣିଗ୍ରାହୀ, ଜଷ୍ଟିସ୍ ହରିହର ମହାପାତ୍ର, ଜଷ୍ଟିସ୍ ବି. କେ. ରାୟ, ବିନୋଦ କାନୁନ୍‌ଗୋ, ନୀଳମଣି ରାଉତରାୟ, ନନ୍ଦିନୀ ଶତପଥୀ, ରବି ରାୟ, ଡଃ ରାଧାନାଥ ରଥ, ବିଚିତ୍ରା-ନନ୍ଦ କର ଓ ବହୁ ବିଶିଷ୍ଟ ବ୍ୟକ୍ତି ଯାଇଥିଲେ । ରମାଦେବୀଙ୍କର ମୃତ୍ୟୁ ସମୟରେ ତାଙ୍କ ପାର୍ଶ୍ୱରେ ତାଙ୍କର ପୁତ୍ର ମନମୋହନ ଚୌଧୁରୀ ଓ କନ୍ୟା ଅନ୍ନପୂର୍ଣ୍ଣା ମହାରଣା ଉପସ୍ଥିତ ଥିଲେ ।

ଖାନ୍‌ନଗର ମଶାଣିରେ ଶବ ଯାଇ ପହଞ୍ଚିଲା । ହଜାର ହଜାର ଲୋକ ରୁଣ୍ଡ ହୋଇଥାନ୍ତି । ଦୁଇକଡ଼ରେ ପୋଲିସ ବାହିନୀ ଠିଆ ହୋଇଥାନ୍ତି । ସମୟ ପ୍ରାୟ ଦିନ ଦୁଇଟା । ମା’ ରମାଦେବୀଙ୍କ ଶବକୁ ଚିତାବେଦୀରେ ଶୁଆଇ ଦିଆଗଲା । ମର ଶରୀରରେ ଜାତୀୟ ପତାକା ଘୋଡ଼ାଇ ଦିଆଗଲା ।

ଖାନ୍‌ନଗର ମଶାଣି ବନ୍ଧୁକ ଗୁଳି ଶବ୍ଦରେ କମ୍ପି ଉଠିଲା । ପୋଲିସମାନେ ବନ୍ଧୁକ ଫୁଟାଇ ସାଲ୍ୟୁଟ ପ୍ରଦାନ କଲେ । ତା’ପରେ ରମାଦେବୀଙ୍କ ପୁତ୍ର ମନମୋହନ ଚୌଧୁରୀ ମୁଖାଗ୍ନି ଦେଲେ । ମହୀୟସୀ ମା’ ରମାଦେବୀଙ୍କ ମରଶରୀର ଜଳି ଉଠିଲା । ଦର୍ଶକମାନଙ୍କ ଆଖିରୁ ଝରି ଆସିଲା ଶ୍ରାବଣୀର ଅଶ୍ରୁଧାର ।

ଦୀର୍ଘ ୮୭ ବର୍ଷର ସାଧନାକୁ ସମାପ୍ତ କରି ମା’ ରମାଦେବୀ ଅମର ହୋଇଗଲେ । ଉତ୍କଳମାତାର ଯୋଗ୍ୟ-ତମା କନ୍ୟା ମହୀୟସୀ ମା’ ରମାଦେବୀଙ୍କର କର୍ମଚଞ୍ଚଳ ଜୀବନର ଅବସାନ ଘଟିଲା ।